# ଶୋଶା

ଅନୁବାଦିକା - ଶ୍ରୀମତୀ ବନୀତା ପାଠକ

# ମୋ ମା

ଗୁଜରାଟୀ ସାହିତ୍ୟର ଶ୍ରେଷ୍ଠ କାହାଣୀ

ପ୍ରଥମ ଭାଗ

ଅନୁବାଦିକା—ଶ୍ରୀମତୀ ବନୀତା ପାଠକ

ପ୍ରକାଶକ
ବନୀତ ପ୍ରକାଶନ
କଟକ ୧

ପ୍ରଥମ ପ୍ରକାଶ
ଜାନୁଆରୀ ୧୯୬୪ ମସିହା

ମୂଲ୍ୟ—ତିନଟଙ୍କା ପଚିଶ ନୂଆ ପଇସା

ମୁଦ୍ରାକର—
ନବ ଭାରତ ପ୍ରେସ୍,
କଟକ ୨

# ସୂଚୀ



* * *

# ମୁଖବନ୍ଧ

ବର୍ତ୍ତମାନ ଯୁଗରେ ଅନୁବାଦ ସାହିତ୍ୟ ସାହିତ୍ୟର ଏକ ବିଶେଷ ଅଙ୍ଗ ହୋଇ ଉଠୁଛି । ପ୍ରତ୍ୟେକ ଭାଷାରେ ସାହିତ୍ୟ ଯେତେ ଉନ୍ନତ ହେଉନା କାହିଁକି ଅନ୍ୟ ଭାଷା ବା ସାହିତ୍ୟରୁ ଗ୍ରହଣ କରିବା ପାଇଁ ତାହାର ଯେ କଳ୍ପନା କରୁ ଥାଏ ଏ କଥା କେହି ଅସ୍ୱୀକାର କରିବେ ନାହିଁ । ଏହାର ପ୍ରଧାନ ଏବଂ ପ୍ରଥମ କାରଣ ସାମାଜିକ ବୈଷମ୍ୟ, ରୀତି, ନୀତି, ଆଚାର ବ୍ୟବହାର ସଂସ୍କୃତି ଏବଂ ପରମ୍ପରା ମଧ୍ୟରେ ତାରତମ୍ୟ, ଭାଷା କହିଲେ ଆମେ ବୁଝୁଁ ଭାବ ଅଭିବ୍ୟକ୍ତିର ମାଧ୍ୟମ ଏବଂ ସାହିତ୍ୟ କହିଲେ ଆମେ ବୁଝୁଁ ସମାଜ, ସଂସ୍କୃତି ଓ ମନୁଷ୍ୟର ସମ୍ପର୍କ ଏବଂ ସମାଜରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ସମ୍ପର୍କର ଲିପିବଦ୍ଧ ବର୍ଣ୍ଣନା । ଭାରତର ଅନ୍ୟାନ୍ୟ ଭାଷା ସାହିତ୍ୟ ତୁଳନା କଲେ ଓଡ଼ିଆ ସାହିତ୍ୟ ଯେ, ଯଥେଷ୍ଟ ସମୃଦ୍ଧ ନୁହେଁ ଏହା ଓଡ଼ିଶାର ପ୍ରତ୍ୟେକ ସାହିତ୍ୟପ୍ରେମୀ ସ୍ୱୀକାର କରିବେ । ବିଶେଷ କରି ସାମାଜିକ ସାହିତ୍ୟ ସୃଷ୍ଟିରେ ଆମେ ଯେ ବହୁପଛରେ ପଡ଼ିଛୁ ଏଥିରେ ସନ୍ଦେହ ନାହିଁ । ଆଧୁନିକ ମାନବ ସମାଜ ଯେତିକି ପରିମାଣରେ ଭୌତିକ (Material) ଅଗ୍ରଗତି କରିଛି ଠିକ୍ ସେହି ପରିମାଣରେ ସାଂସ୍କୃତିକ (Cultural) ଅଗ୍ରଗତି କରିନାହିଁ ଏବଂ ଏହାରି ଫଳରେ ପୃଥିବୀର ଅଧିକାଂଶ ସ୍ଥାନରେ ବାସ୍ତବତା ଦୃଷ୍ଟି କୋଣରୁ ଚିନ୍ତାଶକ୍ତି ଉଦ୍‌ବୃଦ୍ଧି ହୋଇପାରି ନାହିଁ । ଆମେ ଯେତେବେଳେ ଏ ଅଭାବ ଉପଲବ୍‌ଧି କରୁଛେଁ ଆମର କର୍ତ୍ତବ୍ୟ ହେବା ଉଚିତ ଯେ, ଆମର ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିବା । ସାଧାରଣ ଜନତା ମୁଖରେ ନିଜ ମାତୃଭାଷାରେ ଜାଣିଲାଭଳି ସାହିତ୍ୟ ଉପସ୍ଥାପିତ କରିବା । ଅବଶ୍ୟ ମୌଳିକ ସାହିତ୍ୟ ସୃଷ୍ଟି କରିବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ କିମ୍ବା ଅନୁବାଦ ସାହିତ୍ୟ ଉପସ୍ଥାପିତ କରିବା ସହଜସାଧ୍ୟ ନୁହେଁ । କିନ୍ତୁ ସାହିତ୍ୟର ଉଭୟ ଶାଖା ସାହିତ୍ୟକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଯେ ଅତି ଆବଶ୍ୟକ ଏଥିରେ ସନ୍ଦେହ ନାହିଁ । ଏହି କ୍ଷୁଦ୍ର ପୁସ୍ତକରେ ଯେଉଁ କାହାଣୀ ଗୁଡ଼ିକ ହିନ୍ଦିରୁ ଓଡ଼ିଆରେ ଅନୁବାଦିତ ହୋଇଛି ଏବଂ ହିନ୍ଦିରେ ମଧ୍ୟ ଗୁଡ଼ିକ ମୌଳିକ ଲେଖାରୁ ଅନୁବାଦିତ ହୋଇଥିଲା ସେଥିପାଇଁ ହୁଏତ ସ୍ଥାନେ ସ୍ଥାନେ ଭାଷାଗତ ତ୍ରୁଟି ଥାଇପାରେ । କିନ୍ତୁ ଶ୍ରୀମତି ପାଠକଙ୍କର ଏହି ଉଦ୍ୟମ ସର୍ବାଦୌ ପ୍ରଶଂସମୀୟ । ଗଳ୍ପଗୁଡ଼ିକ ଗୁଡ଼ିକ ସାମାଜିକ ଜୀବନର ଚିତ୍ର ବର୍ଣ୍ଣନା କରିଛନ୍ତି । ବିଶେଷ କରି 'ମା' ଗଳ୍ପଟି ଦୁଇଟି

ସାମାଜିକ ସ୍ତରର ସଙ୍ଘର୍ଷ ମଧ୍ୟରେ ଗଢ଼ି ଉଠିଛି । ଏହି ପକ୍ଷରେ ପାଶ୍ଚାତ୍ୟ ସଭ୍ୟତା ସହର ଜୀବନ ଯାପନର ଲାଲସା ଏବଂ ଦାମ୍ପତ୍ୟ ଜୀବନର ସ୍ୱାତନ୍ତ୍ର୍ୟ ଅନ୍ୟ ପକ୍ଷରେ ସନ୍ତାନ ପ୍ରତି ମା'ର ବାତ୍ସଲ୍ୟ ମମତା, ମାର ସହନଶୀଳତା ଓ ତ୍ୟାଗ ଏବଂ ସର୍ବୋପରି ଶାଶୁ ବୋହୂ ସମ୍ପର୍କ ଉପରେ ମାତା ପୁତ୍ର ସମ୍ପର୍କକୁ ପ୍ରଭାବିତ କରୁଛି ଏହି ସଙ୍ଘର୍ଷାତ୍ମକ ଚିନ୍ତାଧାରା 'ମା' ଗଳ୍ପଟିକୁ ପୁଷ୍ଟ କରିଛନ୍ତି । ସାମାଜିକ ସମ୍ପର୍କ ପାରିବାରିକ ସଦ୍‌ଭାବ, ଜାତିଗତ, ତାରତମ୍ୟ ପ୍ରଭୃତି ନାନା ସାମାଜିକ ସମସ୍ୟା ଉପରେ ସାହିତ୍ୟ ସୃଷ୍ଟି ଆମର ବର୍ତ୍ତମାନ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଅତି ଆବଶ୍ୟକ ହୋଇ ଉଠିଛି । ଶ୍ରୀମତୀ ପାଠକଙ୍କର ଏହି କ୍ଷେତ୍ରକୁ ପ୍ରଥମ ଅବଦାନ ରୂପେ "ମୋ ମା" ପୁସ୍ତକଟି ସର୍ବତ୍ର ଆଦୃତ ହେବ ଏଥିରେ ସନ୍ଦେହ ନାହିଁ । ମୋର ଆଶା ଓ ବିଶ୍ୱାସ ଶ୍ରୀମତୀ ପାଠକ ତାଙ୍କର ଲେଖନୀ ବଳରେ ଓଡ଼ିଆ ସାହିତ୍ୟର ଅନୁବାଦ ସାହିତ୍ୟ ବିଭାଗକୁ ପରିପୁଷ୍ଟ କରି ଓଡ଼ିଆ ସମାଜ ତଥା ଜାତିକୁ ଉଦ୍‌ବୁଦ୍ଧ କରିବେ ।

ବୀରେନ୍ ଦାସ

# ମା

ଶ୍ରୀ ଧନସୁଖଲାଲ ମେହେତା

"ମା"···! ସବୁଠାରୁ ସାନପୁଅ ବିନାୟକ ବ୍ୟଗ୍ର ହୋଇ ଡାକିଲା ।

"କ'ଣ ପୁଅ !" ମା ସ୍ନେହପୂର୍ଣ୍ଣ ଉତ୍ସାହଭରା କଣ୍ଠରେ ପଚାରିଲା ? "ନାଁ ! କିଛି ନାହିଁ, କିନ୍ତୁ·····କିନ୍ତୁ, ଆଜି·····ଆଜି ଉର୍ମିଳା ଏଇଠିକି ରହିବାକୁ ଆସୁଛି ।" ଏତିକି କହି ବିନାୟକ ଖୁବ ଶୀଘ୍ର ସିଢ଼ୀ ଚଢ଼ି ନିଜର ଉପର ବଖରାକୁ ଚାଲିଗଲା ।

'ବିନୁ ! ତୁ ମୋତେ କହିଥାନ୍ତୁ, ମୁଁ ଡାକି ଆଣନ୍ତି—କହୁ କହୁ ମାର ଗଳା ଥର ଥର କମ୍ପିବାକୁ ଲାଗିଲା—ଜଣାଗଲା ଯେପରି ସେ ତୀବ୍ର ବେଦନା ଅନୁଭବ କରୁଛି । କିନ୍ତୁ ସେତେବେଳକୁ ବିନାୟକ ଗଲାଣି; ବର୍ତ୍ତମାନ ଆଉ କିଛି କହିବା ନିରର୍ଥକ—ଏହା ବିଚାରି ମା ଚୂପ ହେଲା କିନ୍ତୁ ବେଦନା ସେହିପରି ଥାଏ ।

ମା'ର ତିନିଗୋଟି ପୁଅ – ସବୁଠାରୁ ବଡ଼ ଧୀରଜଲାଲ, ମଝିଆ ରମଣିଲାଲ ତଥା ସାନ ବିନାୟକ । ଯେତେବେଳେ ଏ ତିନିହେଁ ପିଲା—ବାପା ଛାଡ଼ି ଚାଲିଗଲେ । ଏକା ମା ତିନି ଜଣଙ୍କୁ ପାଳି ପୋଷି ବଡ଼ କଲା ଓ ଉଚ୍ଚ ଶିକ୍ଷା ଦିଆଇଲା । ପିଲାଙ୍କ ଉପରେ ମା'ର ପ୍ରଗାଢ଼ ସ୍ନେହ ଥାଏ·····ପତିଙ୍କ ଅଭାବ ଯୋଗୁଁ ଆହୁରି ଅଧିକ ପ୍ରେମ ପୁତ୍ର ମାନଙ୍କଠାରେ କେନ୍ଦ୍ରୀଭୂତ ହୋଇଗଲା । ଏଇ ତିନି ପୁଅ ତାର ଘର ସଂସାର । ତେଣୁ ମା ନିଜର ହୃଦୟକୁ ଏଇମାନଙ୍କ ଉପରେ ଉତ୍ସର୍ଗ କରିଦେଇଥିଲା । ଗ୍ରାଜୁଏଟ ହେବା ସଙ୍ଗେସଙ୍ଗେ ଧୀରଜଲାଲଙ୍କୁ ବମ୍ବେଇରେ

ରେଲ-ବିଭାଗ ଅଫିସରେ ଖଣ୍ଡେ ଭଲ ଚାକିରି ମିଳିଲା । ମା'ର ହୃଦୟରେ ଆନନ୍ଦତରଙ୍ଗ ଖେଳିଗଲା; ଏଥର ସୁବର୍ଣ୍ଣ ଘୁଡ଼ି ବମ୍ବେଇରେ ପୁଅ-ସହ ରହିବ । ସେ ଡ଼ରି ଡ଼ରି ଧୀର ସ୍ୱରରେ ଧୀରଜଲାଲ ତଥା ରତ୍ନବହୁ ସମ୍ମୁଖରେ ନିଜ ଇଚ୍ଛା ପ୍ରକାଶକଲା ।

ମା କହିଲା—ଦୁଇଟା ଘରର ଖର୍ଚ୍ଚ ଚଳାଇବା କଷ୍ଟ । ତଥା ଧୀରୁ ! ମୁଁ ତୁମ ସହିତ ରହିଲେ ଘର ସଂସାର ଜଞ୍ଜାଳ ମଧ୍ୟ ତୁମକୁ ଜଣା ଯିବ ନାହିଁ । କ'ଣ ରତନବହୁ ଠିକ୍ କଥା ନା ?

ରତନବହୁ ଚୂପ ରହିଲା । ଶାଶୁର ହଁ ରେ ହଁ ଭରି ପାରିଲା ନାହିଁ । ଧୀରଜଲାଲ ବ୍ୟସ୍ତବ୍ୟସ୍ତ ହେଲାପରି ଜଣାଗଲା । ସେ ସ୍ତ୍ରୀ ଆଡ଼କୁ ଚାହିଁଲା । କିନ୍ତୁ ଜଳରେ ପରିପୂର୍ଣ୍ଣ ଏବଂ ଗମ୍ଭୀର ସରୋବର ସମ ମୁଖମଣ୍ଡଳରୁ କୌଣସି ପ୍ରେରଣା ମିଳିଲା ନାହିଁ । ମା'ର ସ୍ନେହ-ପିପାସୁ ଚକ୍ଷୁ ଦୁଇଟିକୁ ଚାହିଁବାର ସାହସ ମଧ୍ୟ ଧୀରଜଲାଲର ନ ଥାଏ

"ଭଲ କଥା, ଦେଖାଯିବ" ଧୀରଜଲାଲ କହିଲା—ବର୍ତ୍ତମାନ ସମ୍ଭବ ନୁହେଁ, ଆଗୁ ମୁଁ ଆଗ ବମ୍ବେଇ ଯାଇ ସବୁ ସ୍ଥିର କରେ । କଥା ଏଇଠି ଶେଷ ହେଲା । ମା ଆଉ କିଛି କହି ପାରିଲା ନାହିଁ । ଧୀରଜ-ଲାଲକୁ ଚାକିରି ମିଳିବା ପରେ ସାରା କୁଟୁମ୍ବ ଏକାଠି ରହିବେ, ଏଥି ପାଇଁ କି କି ଆୟୋଜନ କରିବାକୁ ହେବ, ଆଦି ମା ଗୁଡ଼ାଏ ଆକାଶ-କୁସୁମ ତୋଳିରଖିଥିଲା, କିନ୍ତୁ ଠିକ୍ ଉପଯୁକ୍ତ ସମୟରେ କ୍ଷଣକ ମଧ୍ୟରେ ସମସ୍ତ ଝଡ଼ି ଗଲା । ତଥାପି ମା ଏକାବେଳେକେ ନିରାଶ ହୋଇ ନ ଥାଏ । ଧୀରଜଲାଲ ତଥା ରତନବହୁଙ୍କ ବମ୍ବେଇ ଯିବାରେ ଆଉରି କିଛି ଦିନ ଥାଏ । ସେଥିପାଇଁ ମା ସୁବିଧା ସୁଯୋଗ ଦେଖି କିଛି ନା କିଛି ବାହାନାରେ ଖୋସାମତ କରିବାକୁ ଲାଗିଲା । ବାତ୍ସଲ୍ୟମୟୀ ମା ବାତ୍ସଲ୍ୟତାର ଚରମସୀମା ଲଙ୍ଘନ କଲା କିନ୍ତୁ ସମସ୍ତ ବ୍ୟର୍ଥ ହେଲା । ଯୁଗ ବଦଳିଲାଣି ।

'ଶାଶୁ' ନାମକ ଭୟଙ୍କର ପ୍ରାଣୀ 'ବହୁ' ନାମକ ଅପେକ୍ଷାକୃତ ନିର୍ବଳ ପ୍ରାଣୀ ଉପରେ ଅନେକ ବର୍ଷ ଧରି, ଅନେକ ପୁରୁଷ ଧରି ଅତ୍ୟାଚାର କରି ଆସୁଛି । କିନ୍ତୁ 'ଶାଶୁ' ଶ୍ରେଣୀରେ ଅପବାଦ ସ୍ୱରୂପ 'ମା' ମଧ୍ୟ ଥାଏ ଏ କଥାକୁ, ଏହି ସତ୍ୟକୁ ଧୀରଜଲାଲ ତଥା

ରତନବନ୍ଧୁ କେଉଁଠିହେଲେ ବୁଝି ପାରିଲେ ନାହିଁ । ମଜେଷ୍ଟରେ 'ଜାର' ଦୁଷ୍ଟ ନ ଥିଲେ କିନ୍ତୁ 'ଜାର' ନାମକ ସମାଜ ଥିଲା । ତେଣୁ ଭଲ ଖରାପ ବ୍ୟକ୍ତିଙ୍କୁ ମଧ୍ୟ ବଳି ଦିଆଗଲା ।

ଯଦ୍ୟପି ମା'ର ଗଣନା ଶାଶୁ ବର୍ଗରେ ହେବା ଅସମ୍ଭବ ତଥାପି ପରମ୍ପରାଗତ ଶାଶୁଙ୍କର ପାପ, ଅନ୍ୟାୟ, ଅତ୍ୟାଚାର ଯୋଗୁଁ ମା'ଙ୍କୁ ପ୍ରାୟଶ୍ଚିତ କରିବାକୁ ପଡ଼ିଲା । ସେହିପରି ମା'ର ସମସ୍ତ ସଦ୍‌ଗୁଣ, ପ୍ରେମ, ମଧୁର ବଚନ—ଏ ସମସ୍ତ ବାହ୍ୟାଡ଼ମ୍ବର ମାତ୍ର, ବିରାଡ଼ି ଯେପରି ମୂଷାକୁ ମାରିବା ପୂର୍ବରୁ ତା ସହିତ ଖେଳେ; ଅବୁଝା ଧୀରଜଲାଲ ତଥା ରତନବନ୍ଧୁଙ୍କୁ ମା'ର ସମସ୍ତ ସ୍ନେହ ସେହିପରି ଜଣାଗଲା । "ସ୍ୱାଧୀନତା" କେବେ ମନୁଷ୍ୟ ଉପରେ ଏପରି ପ୍ରଭାବ ପକାଏ ଯେ ସେ ଭବିଷ୍ୟତ ଆପଦ ବିପଦ ପ୍ରତି ବିଚାର କରିବାକୁ ଭୁଲିଯାଏ । ମାନବ ଜୀବନରେ,ପାରିବାରିକ ଜୀବନରେ, ପ୍ରତ୍ୟେକ ପରିସ୍ଥିତିରେ ସ୍ୱାଧୀନତା ସୁଖଦାୟକ ହିଁ ନଥାଏ ତଥାପି ସ୍ୱତନ୍ତ୍ର ହେବା ପ୍ରତ୍ୟେକ ମାନବର ଜନ୍ମସିଦ୍ଧ ଅଧିକାର । ଏହି ସିଦ୍ଧାନ୍ତର ମୂଳଦୁଆ ଅତି ଶକ୍ତ । ବର୍ତ୍ତମାନ ସ୍ଥିତି ସୁଖକର ଥାଉ, ସରଳ ସନ୍ତୋଷଜନକ ଥାଉ କିନ୍ତୁ ଏହାର ପରିବର୍ତ୍ତନ ହେଲାପରେ ଯେଉଁ ପରିସ୍ଥିତି ଉପୁଜିବ ତାହା ଆହୁରି ମଙ୍ଗଳମୟ, ଅଧିକ ସରଳ ତଥା ସନ୍ତୋଷଜନକ ହେବ—ଏହି ପରି ଆକାଂକ୍ଷା ମନୁଷ୍ୟ କଦାପି ଛାଡ଼ିବାକୁ ନାରାଜ ।

ଧୀରଜଲାଲ କୁମାର ଅବସ୍ଥାରେ ତଥା ବିବାହିତ ଜୀବନର ଆରମ୍ଭକାଳରେ କୌଣସି ପ୍ରକାର ସାଂସାରିକ ଦୁଃଖ ଅନୁଭବ କରି ନ ଥିଲେ । ମା ଓ ତା' ଭାଇମାନେ ତାଙ୍କୁ କିମ୍ବା ତା' ବନ୍ଧୁଙ୍କୁ କୌଣସି ପ୍ରକାର କଷ୍ଟ ଦେଇ ନ ଥିଲେ, ହେଲେ ମଧ୍ୟ ବମ୍ବେଇ ଯିବା ପ୍ରସଙ୍ଗ ଉଠିବା ମାତ୍ରେ ସେହି ଦମ୍ପତିଙ୍କ ହୃଦୟରେ "ଶାଶୁ" ର ଭୟଙ୍କର ରୂପ ଆସି ଉଭା ହେଲା । ଅନ୍ୟ ଦିଗେ ନାନା ବହୁମୂଲ୍ୟ ଆଭୂଷଣ ବିମଣ୍ଡିତ ସୁସଜ୍ଜିତ ସ୍ୱତନ୍ତ୍ରତା ଦେବୀଙ୍କର ଆକର୍ଷକ ମନୋହର ରୂପ ସମ୍ମୁଖରେ ଉପସ୍ଥିତ ହେଲା ।

ଧୀରଜଲାଲ ଓ ରତନବନ୍ଧୁ ବମ୍ବେଇ ଚାଲିଗଲେ । ମା ଓ ଅନ୍ୟ ଦୁଇଟି ପୁଅ ସୁରଟରେ ହିଁ ରହିଲେ । ମା'ର ହୃଦୟ ବର୍ତ୍ତମାନ

ସୁଦ୍ଧା ପରାଜୟ ସ୍ୱୀକାର କରି ନ ଥାଏ । ସରଳା ମା'ର ଦୃଢ଼ ବିଶ୍ୱାସ ଯେ ଘରର ସୁବ୍ୟବସ୍ଥା, ମଧୁରତା, ସମସ୍ତ ପ୍ରକାର ଅଶାନ୍ତି ଜନକ ପ୍ରସଙ୍ଗରେ ଦକ୍ଷତାର ସହ କାର୍ଯ୍ୟ ତୁଲାଇ ନେବା କ୍ଷମତାର ଅଭାବ, ନବ-ଦମ୍ପତ୍ତିଙ୍କୁ ନିଷ୍ଟୟ ବାଧିବ । ପରନ୍ତୁ ଦିନ ଯେଉଁ ପରିମାଣରେ ଗଡ଼ିବାକୁ ଲାଗିଲା ସେହି ପରିମାଣରେ ତାର ଆଶାଉପରେ ତୁଷାର ପାତ ହେଲା । ବମ୍ବେଇରୁ ଆସୁଥିବା ଚିଠିରେ ପ୍ରାପ୍ୟ ଲେଖା ହୋଇଥାଏ, ବମ୍ବେଇର ବାତାବରଣ ଖରାପ, ସ୍ଥାନର ଅଭାବ ତଥା ପିଲାଙ୍କ ଶିକ୍ଷା ଦୀକ୍ଷା ଖୁବ ଖର୍ଚ୍ଚ ସାପେକ୍ଷ । ବାରମ୍ବାର ଏହି ଢଙ୍ଗର ପତ୍ର ପଢ଼ିବା ଦ୍ୱାରା କ୍ରମେ ମାତା ତଥା ଦୁଇ ଭାଇଙ୍କର ଆଖି ଖୋଲିଗଲା । ସେମାନେ ଅନୁଭବ କଲେ ଯେ ବମ୍ବେଇ ଯିବା ଆଶା ଅମୂଳକ । ଶେଷରେ ବାଧ୍ୟ ହୋଇ ସେମାନେ ଏହି ଆଶା ଅନ୍ତରରୁ ଅନ୍ତର କଲେ । ପୁତ୍ରମାନେ ଯୌବନର ପ୍ରବାହରେ ଏହି ଦୁଃଖକୁ ଭୁଲାଇ ଦେଲେ । କିନ୍ତୁ ମା ମନରେ ଏହି ଦୁଃଖ ଘର କରି ଗଲା । ଯେପରି ଭବିଷ୍ୟତରେ ପୁଣି ଏପରି ପରିସ୍ଥିତି ନ ଆସେ ସେଥିପାଇଁ ସଜାଗ ରହି ମାତା ଦୁଇ ପୁତ୍ରଙ୍କୁ ଆହୁରି ଅଧିକ ସ୍ନେହ କଲା । ମା'ର ବଚନ ମଧୁର ତଥା ହୃଦୟ ଆହୁରି କୋମଳ ହୋଇ ଗଲା !

ମା'ର ଦ୍ୱିତୀୟ ପୁତ୍ର ରମଣଲାଲର ମଧ୍ୟ ବିବାହ ହେଲା । କମଳା ବଧୂ ବେଶରେ ପ୍ରବେଶ କଲା । ନବୋଢ଼ା ପ୍ରତିସ୍ନେହ-ମମତା ଦେଖାଇବାରେ ତଥା ନବ-ଦମ୍ପତ୍ତିଙ୍କୁ ପ୍ରଫୁଲ୍ଲ ରଖିବାରେ ମାର କୌଣସି ତ୍ରୁଟି ରହିଲା ନାହିଁ । ରମଣଲାଲ ଶିକ୍ଷା ବିଭାଗରେ ଚାକିରି ପାଇଲେ । ପ୍ରଥମେ ତାଙ୍କୁ ସୁରତରେ ହିଁ ରହିବାକୁ ହେଲା । ମା'ର ଆନନ୍ଦ ଦେଖେ କିଏ ! ତାଙ୍କୁ ଘର ଅବିକଳ ସ୍ୱର୍ଗ ଜଣାଗଲା । ଘରର ଶ୍ରେଷ୍ଠରୁ ଶ୍ରେଷ୍ଠ କାମ ମଧ୍ୟ ମା ନିଜେ କରେ । ଏପରି ଆନନ୍ଦ ଦେଖିଲେ କାହାର ଈର୍ଷା ନ ହେବ ? ରମଣଲାଲର ଅସ୍ଥାୟୀ ବଦଳି ଅହମଦାବାଦକୁ ହେଲା । ସେ କମଳା ସହିତ ଯିବାପାଇଁ ଯୋଗାଡ଼ରେ ଲାଗିଲେ । ମା ଭୟ-ମିଶା ସ୍ୱରରେ ସାଥିରେ ଯିବାପାଇଁ କହିଲା । ଯୁକ୍ତିବାଢ଼ିଲା ଯେ ଭାଇର ନଜରରେ ବିନାୟକର ଶିକ୍ଷା ମଧ୍ୟ ଉପଯୁକ୍ତ ହେବ । କିନ୍ତୁ ରମଣଲାଲ ଉତ୍ତର ଦେଲେ ଅସ୍ଥାୟୀ ବଦଳି ପରିସ୍ଥିତିରେ ନୂଆଘର ବସାଇବା ଆର୍ଥିକ ଦୃଷ୍ଟିରୁ ମୂର୍ଖତାପୂର୍ଣ୍ଣ । ଥଙ୍କା କରି ମଧ୍ୟ କହିଲା-ଧୀରଜଲାଲ ଓ ରମଣଲାଲର ଶିକ୍ଷା ଦୀକ୍ଷା ମାଙ୍କ ଦେଖରେଖରେ ସମ୍ପନ୍ନ ହୋଇଛି ।

ଅସ୍ତୁ ରମଣେଲାଲ ଓ କମଳା ଅହମଦାବାଦ ଚାଲି ଗଲେ । ବିଶାଳ ଗୃହରେ ମା ଓ ବିନାୟକ ରହିଲେ । ଜଣା ଗଲା ଯେମିତି ଘର ମାଡ଼ିମାଡ଼ି ପଡ଼ୁଛି । ଦୈବଯୋଗୁଁ ରମଣଲାଲର ସ୍ଥାୟୀ ନିବାସ ଅହମଦାବାଦରେ ହିଁ ରହିଲା କିନ୍ତୁ ମା ଓ ବିନାୟକର ଡ଼ାକରା ଆସିଲା ନାହିଁ । ଧୀରଜଲାଲ ପ୍ରତି ଅଭିଯୋଗ କରିବା ତ ବ୍ୟର୍ଥ । ପୁଣି ପୁତ୍ର ବିରୁଦ୍ଧରେ ଅଭିଯୋଗ ପ୍ରେମବତ୍ସଳା ମମତାମୟୀ ମାତାର ହୃଦୟ ସମ୍ଭାଳିବ ବା କିପରି ? ତଥାପି ବେଳେ ବେଳେ ବିନାୟକ ସହ ମାତା ଏହି ବିଷୟ ଚର୍ଚ୍ଚା କରି ବସେ । ବର୍ତ୍ତମାନ ବିନାୟକ ମଧ୍ୟ ନବଯୁବକ ଶ୍ରେଣୀ ଅନ୍ତର୍ଭୁକ୍ତ । ଯୌବନାବସ୍ଥାରେ ସ୍ୱାର୍ଥ, ଅସହାନୁଭୂତି, ଅକରୁଣା ଆଦି ବୃତ୍ତି ନିଜର ସ୍ୱରୂପ ଦେଖାଇ ଥାନ୍ତି । ଅତଃ ରମଣେଲାଲ ତଥା କମଳାର ବ୍ୟବହାରରେ ତାର ବିଶେଷ ଅସନ୍ତୋଷ ହେଲା ନାହିଁ ।

ସେମାନେ ଯେ କିଛି ଅପରାଧ କରିଛନ୍ତି, ସେ ଭାବି ପାରିଲା ନାହିଁ । ବର୍ତ୍ତମାନ ମା'ର ମୌନ ଧାରଣା ଛଡ଼ା ଅନ୍ୟ ଗତି ନାହିଁ ।

ମନୁଷ୍ୟ ବିଚିତ୍ର ପ୍ରକୃତିର ଜୀବ । ଇତର ପ୍ରାଣୀ ଥରେ ମାତ୍ର ଧୋକା ଖାଇ ଥାନ୍ତି କିନ୍ତୁ ପୁଣି ସେହି ଜାଲରେ ପଡ଼ନ୍ତି ନାହିଁ । ମନୁଷ୍ୟ ସମସ୍ତ ପ୍ରାଣୀଙ୍କଠାରୁ ଜ୍ଞାନୀ ହେଲେ ମଧ୍ୟ ଏକରକମ ଛଳନାରେ ଅନେକଥର ପଡ଼ି ମଧ୍ୟ ଆଶାବାନ୍ଧି ହୋଇରହିଥାନ୍ତି । ଯୁବାବସ୍ଥାରେ କ୍ଷଣମାତ୍ର ପାଇଁ ନିରାଶା ଘୋଟି ଆସେ ପୁଣି ଅଳ୍ପ କ୍ଷଣରେ ତାର ଆଘାତ ଦୂର ହୋଇ ଯାଏ ଓ ନିରାଶା ଆଶାର ରୂପ ଧାରଣ କରେ । ବୃଦ୍ଧଙ୍କ ନିରାଶା-ଜନିତ ଆଘାତ ଚଞ୍ଚଳ ଘୁଞ୍ଚେ ନାହିଁ, ମାତ୍ର ଆଶା ମଧ୍ୟ ଛୁଟେ ନାହିଁ ।

ପତିଙ୍କ ମୃତ୍ୟୁ ପରେ ମା ତିନି ପୁତ୍ରଙ୍କଠାରେ ଆଶା ବାନ୍ଧିଥିଲା । ଧୀରଜଲାଲ, ରତନବହୁ ବମ୍ବେଇ ଚାଲିଗଲେ, ଦୁଇ ପୁତ୍ରଙ୍କୁ ନିଜ ସ୍ନେହର କେନ୍ଦ୍ର ବିନ୍ଦୁ ସମ ମଣିଲା । ରମଣଲାଲ ତଥା କମଳାର ଅହମଦାବାଦ ଗମନ ପରେ ମା'ର ଏକମାତ୍ର ସାହା-ଭରସା ବିନାୟକ ରହିଗଲା । ବୃଦ୍ଧ ସୁଲଭ ସଜାଗତା ଓ କାର୍ପଣ୍ୟ ଅର୍ଜିତ ମମତା ତଥା ବାତ୍ସଲ୍ୟତାର ବର୍ଷଣ ମା ବିନାୟକ ଉପରେ ବିଶେଷ ରୂପରେ କଲେ । କିନ୍ତୁ ଯୌବନ ଉନ୍ମାଦ-ମତ୍ତ ଯୁବକ-ଯୁବତୀଙ୍କଠାରେ ଏହାର ମୂଲ୍ୟ କିଛି ନୁହେଁ, ଏହାର

ଉପକାରିତା କିଛି ନୁହେଁ ଓ ଏହାର ଆବଶ୍ୟକତା ମଧ୍ୟ ନାହିଁ । ସେ ଧାରଣା କରନ୍ତି ଯେ ସେମାନଙ୍କଠାରୁ ମମତା, ସ୍ନେହ, ବାତ୍ସଲ୍ୟତା ପ୍ରାପ୍ତ କରିବା ତାଙ୍କ ଜନ୍ମସିଦ୍ଧ ଅଧିକାର । ପୁଣି ମଧ୍ୟ ସେମାନେ ଭାବନ୍ତି ଯେ ଉପହାର ଦାତାଙ୍କଠାରୁ ଉପହାର ସ୍ୱୀକାର କରି ସେମାନେ ତାଙ୍କର ପରମ ଉପକାର କରନ୍ତି ।

କିଛି ଦିନ ଚାଲିଗଲା । ବିନାୟକ ଓକିଲ ହେଲା । ପରେ ମୁନ୍‌ସିଫ ପଦ ପ୍ରାପ୍ତ କଲା ।

ସୁରତରେହିଁ କାର୍ଯ୍ୟରେ ଯୋଗ ଦେଲା । ଅତି ଯାକ୍‌ଜମକରେ ବିବାହ ସମ୍ପନ୍ନ ହେଲା । ସବୁଠାରୁ ଶ୍ରେଷ୍ଠ ବନ୍ଧୁ ଜଣକ ଗ୍ରାଜୁଏଟ । ମା'ର ଗୋଡ଼ତଳେ ପଡ଼ୁ ନଥାଏ । ପ୍ରଥମ ଦୁଇ ବନ୍ଧୁ ଅଳ୍ପ କିଛି ପଢ଼ିଥିଲେ କିନ୍ତୁ ତୃତୀୟ ଗ୍ରାଜୁଏଟ୍ । ଅଭିମାନ କରିବା କଥା ଏହା ବ୍ୟକ୍ତିର ମା'ର ହୃଦୟ କୋଣରୁ ଏହି ବିଚାର ଉଠୁଥାଏ, ଏହି ବନ୍ଧୁଟି ଅନ୍ୟ ବନ୍ଧୁମାନଙ୍କ ପରି ବ୍ୟବହାର କରିବ ନାହିଁ । କାହାରି ଶିକ୍ଷାରେ ପଡ଼ିବା ପ୍ରଶ୍ନ ତ ଉଠୁ ନାହିଁ । ସୁରତରେ ମା'ର ଆବଶ୍ୟକତା ମଧ୍ୟ ନାହିଁ । ବିନାୟକ ମା'ର ସ୍ନେହ, ବାତ୍ସଲ୍ୟତା, ମମତା ପାଇଲା । ଅନ୍ୟ ପୁତ୍ରମାନେ ସେ ତୁଳନାରେ ବହୁତ କମ ପାଇଥିବେ । ଉର୍ମିଳା ନିବନ୍ଧ ଓ ବିବାହର ମଧ୍ୟ ସମୟରେ ଶାଶୁଙ୍କଠାରୁ ଯେଉଁ ପ୍ରୀତି-ସୁଧା ପାନ କରିଥିଲା ସେତିକି ବୋଧହୁଏ କୌଣସି ପୁତ୍ର ବଧୂ ପାଇ ନଥିବେ । ମା' ମଧ୍ୟ ଭାବୁଥାଏ, ଏହା ହେଉଛି ତାର ଅନୁପମ ଖେଳ ଓ ଅନୁପମ କୌଶଳ । ଏଥିରେ ପରିଜୟ ପ୍ରାପ୍ତ କଲେ ଜୀବନର କୌଣସି ଆଶା ଆଉ ବାକି ରହିବ ନାହିଁ ।

ବିବାହର ଗୁରିପାଞ୍ଚ ଦିନ ବିତିଗଲା । ଧୀରଜଲାଲ ତଥା ରତନ ବନ୍ଧୁ ଛୁଟିର ଆଳ ନେଇ ଚାଲିଗଲେ ଓ ବିବାହ ପରର ଜଞ୍ଜାଳରୁ ନିଜର ପିଣ୍ଡ ଛଡ଼ାଇଲେ । ବିବାହ ବେଳାରେ ରତନବନ୍ଧୁ ତଥା କମଳା କନ୍ୟାପକ୍ଷଙ୍କ ଆଗରେ ଏହି ସତ୍ୟପ୍ରକଟ କରିବାକୁ ଚାହୁଁଥିଲେ ଯେ ସେମାନେ ହେଉଛନ୍ତି ବରଯାତ୍ରୀ । କିନ୍ତୁ ମା' ମଧ୍ୟସ୍ଥ ହୋଇ ସମସ୍ତ ବିବାଦ ସମାଧାନ କରି ଦେଲା ଏବଂ ସେ ନିଜେ ମଧ୍ୟ କନ୍ୟାପକ୍ଷ ଅବଲମ୍ବନ କଲା । ତେଣୁ କଳିଗୋଳର ଆଉ ଅବକାଶ ରହିଲା ନାହିଁ ।

ଶୁଭ ପ୍ରସଙ୍ଗ ଜନିତ ଆନନ୍ଦ ଅନୁଭବ କଲା ପରେ ଯେଉଁ ଗ୍ଲାନିର ଅନୁଭୂତି ହୁଏ ସେହି ଗ୍ଲାନିରୁ ମା' ପୂର୍ଣ୍ଣ ରୂପେଣ ମୁକ୍ତ ହୋଇ ନଥିଲା । ଏହା ପୂର୍ବରୁ ବିନାୟକ ଆସି ସୂଚନା ଦେଲା —"ମା ଆଜି ଊର୍ମିଳା ଏଠାକୁ ଆସିବ ।"

ଯେଉଁ ଦୁଃଖପୂର୍ଣ୍ଣ ଘଟଣା ଘଟି ଥାଏ ତାର ପୂର୍ବ ସୂଚନା ମନୁଷ୍ୟ ପ୍ରଥମ ପାଇଯାଏ । ଏହା ସାଧାରଣ ସତ୍ୟ ଯେ ପ୍ରେମ ଓ ଅଧିକାରରେ ଭାଗୀଦାର ହୋଇ କାହାରକୁ ଆସିବା ଦେଖିବା ମାତ୍ରେ ମନୁଷ୍ୟମନରେ ଦୁଃଖହୁଏ । ବିନାୟକର ବଚନ ଶୁଣି ମା'ର ହୃଦୟ ନାନା ଆଶଙ୍କାରେ ପୂର୍ଣ୍ଣ ଉଠିଲା । ବେଦନାର ଝଙ୍କାର ସ୍ପଷ୍ଟ ଶୁଣାଗଲା । ଊର୍ମିଳା ଓ ନିଜ ମଧ୍ୟରେ କୌଣସି ପ୍ରକାର କଣ୍ଟକୁ ପ୍ରବେଶ କରିବାକୁ ଦେବ ନାହିଁ, ସ୍ୱୟଂ ଏହା ନିଜେ କରିବାକୁ ଦେବ ନାହିଁ, ସେତିକି ନୁହେଁ, ଯେପରି ଗନ୍ଧ ମଧ୍ୟ ନ ଆସେ, ଏପରି କଳ୍ପନା ଜଳ୍ପନା କଲା ପରେ ମା'ର ହୃଦୟ ଶାନ୍ତ ହେଲା । ବିନାୟକ ତ ବର୍ତ୍ତମାନ ସୁରତରେ ଚାକିରି କରୁଛି ତେଣୁ ଚିନ୍ତା କରିବାର କୌଣସି କାରଣ ନାହିଁ । ମା'ର ଦୃଢ଼ ବିଶ୍ୱାସ ଥିଲା ଯେ, ସ୍ଥାନାନ୍ତର ହେଲେ ମଧ୍ୟ ଗାଜ୍ଏକ ଯୁବତୀ ନିମନ୍ତେ ମା'ର ସ୍ଥିତି, ବିନା ଦରମାରେ ବିଶ୍ୱସ୍ତ ବ୍ୟକ୍ତି ପ୍ରାପ୍ତ କଲେ ଯେପରି ଭାର ସ୍ୱରୂପ ଜଣାପଡ଼େ ନାହିଁ ବରଂ ଆବଶ୍ୟକ ତଥା ଉପଯୋଗୀ ହୋଇଥାଏ, ସେହିପରି ରହିବ । ସେଥିପାଇଁ ମା' ନିଜ ସନ୍ତପ୍ତ ହୃଦୟକୁ ବାରବାର ସାନ୍ତ୍ୱନା ଦେଇ କହୁଥାଏ ତୁ ଏପରି ଖିନ୍ନ ହେଉଛୁ କାହିଁକି ?

ମା' ମନରେ ସ୍ୱତ ଚିନ୍ତାର ଉଦ୍ରେକ ହେଲା, ଊର୍ମିଳାକୁ ନିଜେ ବିନାୟକ ଗୃହକୁ ଡାକି ପଠାଇବା ପରିବର୍ତ୍ତେ ଯଦି ତା'କୁ କହନ୍ତା କେଡ଼େ ଭଲହୁଅନ୍ତା । ଭାବୁଥାଏ ଥରେ ନୁହେଁ ଅନେକ ଥର କହିଛି ବିଚାର ନିକର ପୁଅଙ୍କ ହିତ ନିମନ୍ତେ ସେ ନିଜର ସୁଖ, ଆନନ୍ଦ ତ୍ୟାଗ କରିଛି । ତେବେ ଏହି ଶ୍ରେଷ୍ଠ କାର୍ଯ୍ୟରେ ନିହିତ ସୁଖର ଭାଗୀଦାର ହେବାକୁ ବିନାୟକ କାହିଁକି ରାଜି ହେଲା ନାହିଁ ? ଏହି ଏକମାତ୍ର ଚିନ୍ତା ମା'ର ହୃଦୟ ବିଦାରଣ କଲା । ଏହି ପ୍ରକାର ବିଚାରଧାରା ଓ ଏହି ପ୍ରକାର ସନ୍ତାପ ଦ୍ୱାରା ବିଷୟ ବସ୍ତୁ ସୁଧାର ହୁଏ ନାହିଁ । ମା ଏହି କଥାଟି ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲା । ତେଣୁ ନିଜ ମନକୁ

ବୁଝାଇ ନେଲା । ଉର୍ମିଳା ରାତ୍ରରେ ଆସିବ । ମା ଭାବଲା ଯେ ସେହି ଅବସର ନିମନ୍ତେ କିଛି ବର୍ଫି ତଥା ଦୁଇଟି ଫୁଲହାର ମଗାଇବା ଠିକ୍ ହେବ । ଏହା ଦ୍ୱାରା ବହୁତ ଆନନ୍ଦିତ ହେବ । କିନ୍ତୁ ବଜାରରୁ ଆଣିବ କିଏ ? ଗୃହକରିବାକରଙ୍କୁ ଏପରି କଥା କୁହାଯାଇ ନପାରେ ।

ମା ନାନା ବିଚାର କରି କମଳାକୁ କହିବାକୁ ସାହସ କଲେ — "କମଳା ଆଜିଠାରୁ ଉର୍ମିଳା ଏଠାରେ ରହିବା ପାଇଁ ଆସୁଅଛି ।"

ମା ଆଡ଼କୁ ନ ଚାହିଁ ରୁକ୍ଷ କଣ୍ଠରେ କମଳା କହିଲା—"ବିବାହ କରିଛି ତ ଆସିବ ନିଶ୍ଚୟ । ନଚେତଲେ ବିବାହ କରନ୍ତା କାହିଁକି ? "ହଁ ଏକଥା ତ ଠିକ୍, ପରନ୍ତୁ ମୋ ମତରେ ଅଳ୍ପ କିଛି ବର୍ଫି ତଥା ଦୁଇଟା ଫୁଲହାର ମଗାଇ ରଖିବା ଠିକ୍ ହେବ"—ମା ଧୀରେ କହିଲେ ।

"ଆପଣ ଯାହା କରିବାକୁ ଚାହାନ୍ତି କରନ୍ତୁ ମୁଁ କଅଣ ମନା କରୁଛି ?" କମଳା ଉତ୍ତର ଦେଲା । "ନୂଆ ନୂଆ ନିୟମ ପ୍ରଚଳନ କରିବା ମୁଁ ଉପଯୁକ୍ତ ମନେ କରୁନାହିଁ ।" ଆଉ ତର୍କ କରିବା ନିରର୍ଥକ ମନେ କରି ମା ବିନମ୍ର ହୋଇ କହିଲା —ତୁ ଯାଇ ଟିକିଏ ଏଇ ପାଖ ଦୋକାନରୁ ଆଣି ଦେବୁ ନା ?

"ଆହା ! ମୁଁ ଆଣିବାକୁ ଯିବ !" କମଳା କଟାକ୍ଷପାତ କରି ହସି ହସି କହିଲା "ମୋର ତ ଏପରି କିଛି ସୌକ ନାହିଁ । ଆଉ ସମୟ ମଧ କାହିଁ ? ସନ୍ଧ୍ୟା ଛୋଟି ଆସିଲାଣି ପୁଣି ଆଜି ରାତି ନଅଟା ଗାଡ଼ିରେ ଆମକୁ ଅହମଦାବାଦ ଯିବାକୁ ହେବ । ବର୍ତ୍ତମାନ, ଅଜା, କକା ଓ ସାନ ମାମୁଙ୍କ ସହିତ ସାକ୍ଷାତ କରିବାକୁ ହେବ । କୌଣସି ଚାକର ଦ୍ୱାରା ମଗାଇ ନିଅନ୍ତୁ । ମୋ ମତରେ ଆପଣ ବ୍ୟର୍ଥରେ କଷ୍ଟ ଉଠାଉଛନ୍ତି । ଏହି ସୁକାର୍ଯ୍ୟରେ ଆପଣଙ୍କୁ ଗୌରବ ପ୍ରଦାନ କରିବା ଲୋକ କେହି ନାହିଁ ।"

କମଳାର ଅନ୍ତିମ ବାକ୍ୟରେ ମା'କୁ ନଗ୍ନ ସତ୍ୟର ଆଭାସ ମିଳିଲା । ତେବେ ସୁଦ୍ଧା ହୃଦୟ ଏହି ସତ୍ୟକୁ ଗ୍ରହଣ କରିବା ପାଇଁ ରାଜି ନଥାଏ । ମୃତ୍ୟୁ ଶଯ୍ୟାଶାୟୀ ରୋଗୀକୁ ଯଦି କୌଣସି ଡାକ୍ତର କହେ—ଆଉ

ବଞ୍ଚିବାର ଆଶା ନାହିଁ ।" ତଥାପି ଏହି କଠୋର ସତ୍ୟକୁ ଶୁଣିବା ପାଇଁ ରୋଗୀ ପ୍ରସ୍ତୁତ ନୁହେଁ । ମା' ବିଷୟବସ୍ତୁ ସହ ସମ୍ପୂର୍ଣ୍ଣ ପରିଚିତ ହେଲେହେଁ ଏହି କଥା ସ୍ୱୀକାର କରିବା ପାଇଁ ସେ ରାଜି ନୁହେଁ । କମଳାକୁ ଘୁଡ଼ି କଣଢରେ ଘରୁ ବାହାରି ବଜାର ଚାଲିଗଲା । ମାଳି ଦୋକାନରୁ ଫୁଲ ହାର ତଥା ଗୁଡ଼ିଆ ଦୋକାନରୁ ବରଫି ଟୋକେଇ ଆଣି ନିଜ ଘରେ ଲୁଚାଇ ରଖିଲା ।

ରାତ୍ର ଭୋଜନ ଶୀଘ୍ର ସରିଲା । ରମଣଲାଲ ତଥା କମଳା "ଆସିବେ, ନିଶ୍ଚୟ ଆସିବେ, ସ୍ୱାସ୍ଥ୍ୟ ପ୍ରତି ନଜର ରଖିବେ, ଚିଠିପତ୍ର ଦେଉଥିବେ" ଆଦି ମଧୁର ବଚନ କହି ଅହମଦାବାଦକୁ ଚାଲିଗଲେ । ଘରେ ମା ଓ ବିନାୟକ ଦୁହେଁ ରହିଗଲେ । ବିନାୟକର ହୃଦୟ ଭାବାବେଗରେ ବ୍ୟଗ୍ର ଥାଏ । ତେଣୁ ଶାନ୍ତିରେ ଘରେ ରହି ପାରିଲା ନାହିଁ । କପଟକରି ବିନାୟକ କହିଲା ସେ ପଡ଼ୋଶୀ ଘରକୁ ଯାଇ ପାଞ୍ଚମିନିଟରେ ଫେରିବ । ପୁଅର କପଟବ୍ୟଥା ଓ ଶାନ୍ତ ମା'ର ହୃଦୟରେ ପୀଡ଼ା ଦେଲା । କୌତୁହଳ ହୋଇ ଜଣେ ଦୁଇଜଣ ପଡ଼ୋଶୀ ସ୍ତ୍ରୀ ମା ସହିତ ସାକ୍ଷାତ କରିବାକୁ ଆସିଲେ । ମା ସେମାନଙ୍କ ସହ ଖୋଲାମନରେ ଆଳାପ କରି ପାରିଲା ନାହିଁ । ତେଣୁ ପଡ଼ୋଶୀଙ୍କୁ ନିରାଶ ହେବାକୁ ପଡ଼ିଲା ।

ଜଣେ ପଡ଼ୋଶୀ ସ୍ତ୍ରୀ ପଚାରିଲା—ବର୍ତ୍ତମାନ ସୁଦ୍ଧା ବହୂ ଆସି ନାହିଁ ?

"ଆସିବ, ବ୍ୟଗ୍ର କାହିଁକି", ମା' ରୁକ୍ଷତାର ସହ ଉତ୍ତର ଦେଲା ।

ପଡ଼ୋଶୀ ମାଇପେ ଚାଲିଗଲେ । ମା ଚଞ୍ଚଳ ବିନାୟକ ବଖରାକୁ ଯାଇ ଶେଷ ବ୍ୟବସ୍ଥା ତଥା ସଫେଇ କରି ଆସିଲା । ଗୋଟିଏ କୋଣରେ ଘିଅ ଦୀପ ମଧ୍ୟ ଜାଳି ଦେଇଥାଏ । ଆଉ ଦୁଇ ଚାରୋଟି ଧୂପ କାଠି ନିଆଁ ଧରେଇ ଥୋଇ ଦେଇଥାଏ ।

କବାଟ ଖୋଲିବା ଶବ୍ଦ ଶୁଣାଗଲା । ମା'ର ହୃଦୟ ଦୋହଲି ଉଠିଲା । ପୁଅକୁ ନେବାପାଇଁ ସତେଯେପରି ସ୍ୱୟଂ ଯମରାଜ ଆସୁଛନ୍ତି । ଏହିପରି ତାର ଭ୍ରାନ୍ତିହେଲା । ହୃଦୟ ଆବେଗରେ ପୂର୍ଣ୍ଣହୋଇ ଉଠିଲା । କାନ୍ଦ କାନ୍ଦ ହୋଇ

ବିଷାଦକୁ ଦଳି ମା ମମତାଭରା କଣ୍ଠରେ କହିଲା, "ଆ ଊର୍ମିଳା, ଆ, ମା, ସଂକୋଚ କରିବାର କୌଣସି କାରଣ ନାହିଁ । ଘର ତ ତୋର ଝିଅ ।" ମା ସିଡ଼ି ପର୍ଯ୍ୟନ୍ତ ଗଲା । ଊର୍ମିଳାର ହାତ ଧରି ତାର ବଖରାକୁ ନେଇଗଲା ଓ ଚୌକିରେ ବସାଇଦେଲା ।

ଊର୍ମିଳା ବ୍ରାହ୍ମଣ ଝିଅ । ସେ ଆଉ ବିନାୟକ ବିବାହର ବହୁ ପୂର୍ବରୁ ପରିଚିତ ଥିଲେ । କିନ୍ତୁ ଆଜି ନବଜୀବନର ଶୁଭକ୍ଷଣ ସମୟ ନିକଟ ହୋଇ ଆସୁଥାଏ । ସେଥିପାଇଁ ସେ ଅଳ୍ପ ବ୍ୟଗ୍ର ଥାଏ । କିଛି ଅସ୍ୱସ୍ତି କର ମଧ୍ୟ ବୋଧ କରୁଥିଲା । ଶୀତ ଥିଲେ ମଧ୍ୟ ତା ମୁଖମଣ୍ଡଳରେ ଶ୍ରମ-ବିନ୍ଦୁ ଝଲକୁ ଥାଏ । ଏହାକୁ ରୁମାଲରେ ପୋଛିଦେବା ବିଚାର ମଧ୍ୟ ଊର୍ମିଳାର ନ ଥିଲା । କିଛି ସମୟ ପାଇଁ ଶାଶୁ ବୋହୂ ଦୁହେଁ ପରସ୍ପରକୁ ଚାହିଁ ରହିଲେ । କିନ୍ତୁ ଏହି ନୀରବତା ମା ସହି ପାରିଲା ନାହିଁ । ତେଣୁ ପଚାରିଲା—"ପାଣି ପିଇବୁ କି ?" "ନା, ନା ଆଜ୍ଞା" ଊର୍ମିଳା ଉତ୍ତର ଦେଲା ।

"ଊର୍ମି ! ମୋତେ ଆପଣା ମା ସମାନ ଭାବିବୁ, ଟିକିଏ ହେଲେ ପ୍ରଭେଦ ରଖିବୁ ନାହିଁ । ଥର ଥର କମ୍ପୁଥିବା ଓଠକୁ ଜାବୁଡ଼ି ମା କହିଲା—ମୋ ପାଇଁ ତ ତୁ ଆଉ ବିନାୟକ ଦୁହେଁ ରହିଲ ।"

"ହଁ, ଆଜ୍ଞା ହଁ", ଊର୍ମିଳା ମୁଣ୍ଡ ନୁଆଁଇ ଉତ୍ତର ଦେଲା ।

ଶ୍ରେଷ୍ଠ ବୋହୂର ହୃଦୟ ଜିଣିବା ପାଇଁ ଶାଶୁ ସମସ୍ତ ଚେଷ୍ଟା କଲେ, କିନ୍ତୁ 'ଶାଶୁ ନାମକ ସମାଜ'ହିଁ ତାଙ୍କୁ ବ୍ୟାଘାତ ଦେଲା । ଗୋଟିଏ ସୂକ୍ଷ୍ମ ଶକ୍ତିର ପ୍ରୟୋଗବିନା ଶାଶୁ ବୋହୂ ଦୁହେଁ ପରସ୍ପରର ଅନ୍ତର—ଭାବ ଜାଣିବା ପାଇଁ ଚେଷ୍ଟା କଲେ । ନିଜର ଅଳିଅଳ ପୁଅକୁ ହରଣ କରିବା ନିମିତ୍ତ ଏହି ଗୃହେଡର ଝିଅଟି ଆସିଛି, ନିଶ୍ଚୟ ବିଜୟ ଏହାର ।

ସ୍ୱୟଂ ନିଜେ ଆପଣାର ସର୍ବସ୍ୱ ଅର୍ପଣ କରିବାକୁ ବ୍ୟଗ୍ର କିନ୍ତୁ ସେପଟୁ ସମାଧାନର କୌଣସି ତତ୍ପରତା ଦୃଷ୍ଟି ଗୋଚର ହେଉ ନାହିଁ । ମା'ର ହୃଦୟ ସମସ୍ତ ବିଷୟ ପରଖି ନେଲା । ଯାହୁଁ ଯାହୁଁ ମା'ର ହୃଦୟରେ ଏହି ପରି ବିଚାର ପ୍ରବେଶ କରିବାକୁ ଲାଗିଲା, ତାହୁଁ ତାହୁଁ ମା'ର ଅଙ୍ଗ ପ୍ରତ୍ୟଙ୍ଗ ଶିଥିଳ ହେବାକୁ ଲାଗିଲା । "କଅଣ

କରିପିବ, କଅଣ କହିବ ଯଦ୍ଦ୍ୱାରା ବନ୍ଧୁ ମୋ ଆଡ଼କୁ ଆକର୍ଷିତ ହେବ ?" ଆଜ ବନ୍ଧୁର ଦ୍ୱାରା ମା'ର ମୁହଁ ବନ୍ଦ ହୋଇଗଲା ।

ଉର୍ମିଳାର ଶାଶୁଙ୍କ ସହ ବେଶ ସୁନ୍ଦର ପରିଚୟ ହୋଇ ଥିଲା । ସେହି ପରିଚୟରେ ଶାଶୁଙ୍କ କୌଣସି ଦୋଷ ଦୃଷ୍ଟିଗୋଚର ହୋଇ ନାହିଁ । ହେଲେ କଅଣ ହେଲା ଶାଶୁ ତ ଶାଶୁ । ଏହି ବଗୁର ଅନ୍ୟ ସମସ୍ତ ବଗୁରକୁ ଦୂରକୁ ଠେଲି ଦେଇ ଉର୍ମିଳାର ମୁଖ ତଥା ମସ୍ତିଷ୍କକୁ ଆପଣା ଅଧୀନ କରି ନେଲା । ଶାଶୁଙ୍କର ହାତୀ ସଦୃଶ ଦୁଇଟି ଦାନ୍ତ ଥାଏ । ଖାଇବା ଦାନ୍ତ ଭିନ୍ନ, ଦେଖାଇବା ଦାନ୍ତ ଭିନ୍ନ । ଏହି ବାକ ଥିବା ଉର୍ମିଳାର ସମସ୍ତ କୋମଳ ଭାବନାକୁ ଦଳି ଦେଲା ।

ଏତିକିବେଳେ ବିନାୟକ ଆସିପହଞ୍ଚିଲା । 'ଓହୋ । ଉର୍ମିଳା ଆସିଗଲୁ । ପୁଣି କହିଲା "ମା ! ମୋ ପାଖକୁ ଖବର ପଠାଇ ଥାନ୍ତୁ ।"

ମା କହିଲା—'ବାପା, କେଉଁଠିକି ଖବର ପଠାନ୍ତି ?' ତୁ ମୋତେ କେଉଁଠିକି ଯାଉଛୁ କହିଥିଲେ ନା ?

"ଓହ ଏଗାରଟା ବାଜିଗଲା ।" ଘଡ଼ି ଦେଖି ବିନାୟକ ନିଜ ବଖରାକୁ ଯିବା ଉଦ୍ଦେଶ୍ୟରେ ସିଡ଼ି ଚଢ଼ିବାକୁ ଲାଗିଲା । ମା ଅତି କୋମଳତାର ସହ ହାତ ଟିପି କହିଲା—ଉର୍ମି ! ଟିକିଏ ଥା ଏଇଟା ନେଇ ଯିବୁ ।

ମା ଦୌଡ଼ିଲା । ଲୁଗାଇ ରଖିଥିବା ବର୍ଫି ଟୋକେଇ ଓ ହାର ଉର୍ମିଳାର ହାତରେ ରଖିଦେଲା । ବିନାୟକ ଓସାରିଆ ସିଡ଼ିର ମଝିରେ ଥାଇ ଏହି ଦୃଶ୍ୟ ଦେଖୁଥାଏ । କ୍ଷଣକ ପାଇଁ ମାଆଙ୍କ ପ୍ରତି ପ୍ରେମ ତରଙ୍ଗ ଉଚ୍ଛୁଳି ଉଠିଲା । ମା'ର ଉପକାର ସ୍ୱୀକାର କରିବାକୁ ଯାଉଁ ଯାଉଁ କେଜାଣି କାହିଁକି ଅଟକି ଗଲା । ଉର୍ମିଳା ବିନାୟକକୁ ଦେଖୁଥାଏ । କ୍ଷଣକେ ପାଇଁ ବିନାୟକ ଉର୍ମିଳାକୁ ଅନାଇ ରହିଲା । ପରେ ମା ଆଡ଼କୁ ଦୃଷ୍ଟି ଫେରାଇଲା । ତା ହୃଦୟ ଭଉଁରି ଘୂରିବାକୁ ଲାଗିଲା । କ୍ଷଣକ ମଧ୍ୟରେ ମା କୋଳରେ ଖେଳିବା ଅବସ୍ଥାଠାରୁ ବିବାହ ଅବସ୍ଥା ପର୍ଯ୍ୟନ୍ତ ସମସ୍ତ ଜୀବନର ଚଳଚ୍ଚିତ୍ର ପଟ୍ଟ ତା ଆଖି ଆଗରେ ନାଚିବାକୁ ଲାଗିଲା । ପରନ୍ତୁ ଅତିଶୀଘ୍ର ଉର୍ମିଳାର ଆକୃତି ହଠାତ୍ ଆସି ତା ସମ୍ମୁଖରେ ଉଭା ହେଲା । ଅଜ୍ଞାତ କାଳର

ମାନବ ସମାଜରେ ସଂଯୁକ୍ତ ପରିବାରିକ ଜୀବନ କଥା ଗ୍ରୀଷ୍ମ ଶେଷ ସମୟେ ସେ ଦେଖିଲ ।

ଊର୍ମିଳା ସିଡ଼ି ଅଡ଼କୁ ମୁହଁ ଘେରାଇଲା । ବିନାୟକ ଓସାରିଆ ସିଡ଼ି ମଝିରେ ଠିଆ ହୋଇ ମା'କୁ ସମ୍ବୋଧନ କରି କହିଲା—"ମା କିଛି ମନରେ ଭାବିବୁ ନାହିଁ, କାଲିଠାରୁ ଆମେ ସିଭିଲ ଲାଇନ୍‌ସରେ ରହିବା ପାଇଁ ଯିବୁ । କିନ୍ତୁ······କିନ୍ତୁ······ପଦ ଅନୁଯାୟୀ ଢିମଢାମରେ ରହିବାକୁ ତ ହେବ । ଛାତିରେ ଛୁରି ମାରିଲେ ଯେଉଁ ବେଦନା ହୁଏ ସେହି ଭଳି ବେଦନାର ଅନୁଭବ ମା'କୁ ଦେଇ ସେ ପୁଣି କହିଲା— ଆପଣଙ୍କୁ ଦେବଦର୍ଶନ ଆଦି ସମସ୍ତ ଧର୍ମ ଚର୍ଚ୍ଚା ଦରକାର, ତେଣୁ ସେଠାରେ ଆପଣଙ୍କୁ ଭଲ ଲାଗିବ ନାହିଁ । ପୁଣି ଆମ ନିଜ ଗାଡ଼ି ତ ରହିଛି ଯେତେବେଳେ ଆସିବାକୁ ଇଚ୍ଛା ହେବ ରବିଆ ହାତରେ କହି ପଠାଇବ । ଦୂର ବା କେତେ ।"

ବିନାୟକ ଏତିକ କହି ଏକମୁହାଁ ହୋଇ ସିଡ଼ି ଚଢ଼ି ଚାଲିଗଲା । ଊର୍ମିଳା ଟିକିଏ ଧୀରେ ଧୀରେ ଉପରକୁ ଉଠିଲା । ଶୂନ୍ୟ ଘରେ ଉପର ଘର କବାଟ ବନ୍ଦ୍ କରିବା ଶବ୍ଦ ପ୍ରତିଧ୍ୱନିତ ହୋଇ ଉଠିଲା ।

ବରଫି ଠୋଙ୍ଗାରେ ବନ୍ଧା ହୋଇଥିବା ସୁଗନ୍ଧ ଓ ପତ୍ର ମା ହାତରେ ଥିଲା । ସେ ଯେମିତି କି ସେମିତି ରହିଗଲା । ମାଙ୍କୁ ଘରର କାନ୍ଥ ବୁଲିଲା ଭଳି ଦେଖାଗଲା । ଖୁବ ଥଣ୍ଡା ପଡ଼ୁଥିଲେ ହେଁ ମା'ର ଶରୀରରୁ ଶ୍ରମବିନ୍ଦୁ ବହିବାକୁ ଲାଗିଲା । ସବୁସାର୍ଶୀର ଶିଥିଳ ହୋଇଗଲା, ଜଣାଗଲା ଯେମିତି ସେ ଆହୁରି ଦଶ ବର୍ଷରେ ବୁଢ଼ି ହୋଇ ଗଲାଣି । ତା ହୃଦୟରେ ତଥା ଗୃହରେ ମୃତ୍ୟୁ ସମାନ ଶାନ୍ତି ବ୍ୟାପି ଗଲା । ଠିକ୍ ସେହି ଭଳି ଶାନ୍ତି ହଠାତ୍ ବୃଦ୍ଧା ମାତାର ହୃଦୟରେ ବ୍ୟାପିଗଲା । ବୃଦ୍ଧାର ଗୋଡ଼ ଥରିବାକୁ ଲାଗିଲା । ହାତରୁ ବରଫି ଠୋଙ୍ଗାରେ ବନ୍ଧା ଥିବା ସୁଗନ୍ଧ ଓ ପତ୍ର ଖସି ଭୂଇଁରେ ପଡ଼ିଗଲା । ମା ମଧ୍ୟ ସେହି ସ୍ଥାନରେ ଭୂଲୁଣ୍ଠିତ ହେଲା ।

* * *

# ଗଉଡୁଣୀ

ଶ୍ରୀ ମଳୟାନିଳ

ସେ ପୂର୍ଣ୍ଣ ଯୁବତୀ । କାହାର ଅଧରରେ ପନ୍ଦର ବର୍ଷରେ ଲାଲିମା ଦେଖା ଦେଇ ଥାଏ, କାହାର ସତର ଅଠର ବର୍ଷରେ ନୟନ ଚମକ ଉଠେ କିନ୍ତୁ ଷୋଡ଼ଶ ବର୍ଷ ପାର କରିବାମାତ୍ରେ ତା କଣ୍ଠରେ କୋଇଲିର କୂଜନ ଶୁଣାଗଲା । ବୟସଟା ଧୀରେ ଧୀରେ ଅପସରି ଯାଉଥାଏ ଓ ସେ ଧୀରେ ଧୀରେ ଚତୁର ହେବାକୁ ଲାଗିଲା । ଅପ୍ରସ୍ଫୁଟିତ କଢ଼ ପୁଷ୍ପର ଆକାର ଧାରଣ କରୁଥାଏ ।

ସେ ଆପଣମାନଙ୍କ ଭାଷାରେ ପଢ଼ାଲେଖା କିମ୍ବା ସଭ୍ୟ ନ ଥିଲା ସତ କିନ୍ତୁ ଭଦ୍ର ଚଞ୍ଚଳା । ସେ ସହରର ଝିଅ ନୁହେଁ ତଥାପି ଖୁବ ଶିଷ୍ଟ । ଉଚ୍ଚ-ବର୍ଣ୍ଣ ସମ୍ପନ୍ନ ନୁହେଁ କିନ୍ତୁ ଗୋରା । କଳା ଭଅଁର ସମ ନୟନ, ଶରର ଧାର ପରି ପୁତୁଳିକା ତଥା ଗଣ୍ଡ ଦେଶରେ ଗୋଲାପର ରକ୍ତିମା ବିରାଜମାନ ଥାଏ ।

ମୁଣ୍ଡ ଉପରେ ପିତ୍ତଳର ଗରା ରଖି ଯେତେବେଳେ ସେ ଗାଆଁରେ ପାଦ ଦିଏ, ଜଣା ଯାଏ ସତେ ଯେମିତି ସାକ୍ଷାତ ଲକ୍ଷ୍ମୀ ଆଗମନ କରିଛନ୍ତି । "ଦୁଧ ନେବ ଗୋ ଦୁଧ"···ତାର ଧ୍ୱନି ଯେତେବେଳେ ଗଳି ଗଳିରେ ପ୍ରତିଧ୍ୱନିତ ହୋଇ ଉଠେ ଦାନ୍ତ ଘଷୁଥିବା ଲୋକେ ତାକୁ ଚାହିଁବାରେ ଲାଗନ୍ତି । ପୁରୁଷଙ୍କର ସକାଳୁ ଶୁଭ ଦର୍ଶନ ହୁଏ । ମାଇପେ ଈର୍ଷାରେ ଜଳି ମରନ୍ତି ।

ସେ ଥିଲା ଗୁଜରାଟର ଗଉଡୁଣୀ । ସକାଳୁ ନିଜଗାଁରୁ ବାହାରେ । ଟାଟକା ଦୁଧ ନେଇ ଆମ ଗାଁକୁ ଆସେ । ପ୍ରତ୍ୟେକେ ତା ଠାରୁ ଦୁଧ ନେବାପାଇଁ ଇଚ୍ଛା କରନ୍ତି । ତାର ଡାକ ଦୁଧ ନେବ···ଦୁଧ···ଶୁଣିବା ମାତ୍ରେ ସାହିର ମାଇପେ ଶୀଘ୍ର ବିଛଣା ଛାଡ଼ି ଉଠି ବସନ୍ତି ।

ସେ ସର୍ବଦା କୁଳେଇଚାରେ ସହ ମୋଟା କିନ୍ତୁ ସ୍ୱଚ୍ଛ ଓ ନୂଆ ଲାଲ ବର୍ଣ୍ଣର ସାଢ଼ୀ ପିନ୍ଧେ । ସାଢ଼ୀର ଧଡ଼ି ହଳଦିଆ ଓ କାନି କଳା ରଙ୍ଗର ଥାଏ । ହାତରେ ରୁପାରେ ଖଞ୍ଜା ଯାଇଥିବା ହାଣ୍ଡି ଦାନ୍ତର ବଡ଼ ବଡ଼ ଚୁଡ଼ି, ଗୋଡ଼ରେ ମୋଟା ବଳା, ନାକରେ ନଥ ତଥା କାନରେ କାନଫୁଲ ପିନ୍ଧିଥାଏ । ଅଙ୍ଗୁଳିରେ ରୁପାର ଅଙ୍ଗୁଠି, ଗଳାରେ ହଁସୁଲି ଓ ଝିଲଡ଼ି ଏହି ମାତ୍ର ତାର ଆଭୂଷଣ । ମୁହଁରେ ଓଢ଼ଣା ବେଶୀ ଥିବା ଯୋଗୁଁ କେଶ ବିଷୟରେ କିଛି ଜଣାଯାଏ ନାହିଁ, ସୁନ୍ଥା କାଢ଼େ କି ନାହିଁ ସେଥିରେ କୁଙ୍କୁମ ଅଥବା ସିନ୍ଦୂର ପିନ୍ଧେ କି ନାହିଁ, କିଛି ଜଣା ନ ଥିଲା । କିନ୍ତୁ ଏହି ସବୁର କଳ୍ପନା ହିଁ ତା ସୌନ୍ଦର୍ଯ୍ୟକୁ ଚାରିଗୁଣ ବଢ଼ାଇ ଦିଏ ।

ଠିକ ତା ଆସିବା ବେଳ ଦେଖି ପିଣ୍ଡାରେ ମୁଁ ଦାନ୍ତ ଘଷି ବସେ । ଯେତେବେଳ ସେ ଆସେ ମୁଁ ନିପଟ ବେହିଆ ହୋଇ ଅପଲକ ତାହାର ଆଡ଼କୁ ଚାହିଁ ରହେ । ସେ ବିଚରା ଲଜ୍ଜାରେ ଆଖି ତଳକୁ କରି ନିଏ । ମାତ୍ର ଅନ୍ୟାନ୍ୟ ନୂଆ ବୋହୂ ମାନଙ୍କ ପରି ତାର ଚାଲିରେ କୌଣସି ପ୍ରଭେଦ ଦେଖାଯାଏ ନାହିଁ କିମ୍ବା କୌଣସି ପ୍ରକାରର ହୃତ୍‌କମ୍ପ ମଧ୍ୟ ସୃଷ୍ଟି ହୁଏ ନାହିଁ । ହାତ ମଧ୍ୟ ଏପଟ ସେପଟ ପଡ଼େ ନାହିଁ । ଶାନ୍ତ, ଗମ୍ଭୀରତା ତଥା ଧୈର୍ଯ୍ୟର ସହ ସବୁବେଳ ପରି ଡ଼ାକେ "ଦୁଧ ନେବ ......ଦୁଧ ।"

ମୁଁ ନିତ୍ୟ ପତ୍ନୀକୁ ପଚାରେ-ତୁ ଏହି ଗଉଡ଼ୁଣୀଠାରୁ ଦୁଧ କାହିଁକି ନେଉ ନାହୁଁ ? ପ୍ରତିଦିନ "ଭଉଣୀ ଦୁଧ ନେବ" କହି କହି ବିଚାରିର ମୁହଁ ବଥା ହୋଇ ଗିବଣି । ମାତ୍ର ତୁମେ ଜଣେ ଅଛ ଯେ ଥରିକଏ ହେଲେ ତା ପ୍ରତି ଖାତିର କରୁ ନାହିଁ ।

ଜାଣେ ନାହିଁ କାହିଁକି, କିନ୍ତୁ ଯେଉଁ ଦିନଠାରୁ ତାକୁ ଦେଖିଲି ସେହି ଦିନଠାରୁ ତାପ୍ରତି ମୋ ହୃଦୟରେ ବିଚିତ୍ର ଭାବନା ଉଚ୍ଛୁଳି ଉଠିଲା । ଘର ପାଇଁ ଜବରଦସ୍ତି ତାଠାରୁ ଦୁଧ କିଣାଏ ଏବଂ ଏହି ସୁଯୋଗରେ ଅଗଣାରେ କିଛି ସମୟ ପାଇଁ ତାକୁ ବସାଇ ରଖେ । ସୁଯୋଗ ଦେଖି ମୋ ଆଡ଼କୁ ତାର ଦୃଷ୍ଟି ଆକର୍ଷଣ କରେ । ଇଦୃଶ କୋମଳାଙ୍ଗୀ ହୋଇ ସେ ଗଉଡ଼ ଘରେ କାହିଁକି ଜନ୍ମ ନେଲା ? ସୁକୋମଳ ଗଣ୍ଡ

ଦେଶରେ ଏହି ମୋଟା ବସ୍ତ୍ରର ସ୍ବର୍ଣ୍ଣ କପଡ଼ ବା ସମ୍ଭାନ୍ତ ଥିବ ? ଈଶ୍ବର ମଧ୍ୟ ନ ବୁଝି ନ ସୁଝି ଜନ୍ମ ଦେଇ ଦିଅନ୍ତି ।

ସେହି ଦିନ ମୋର ହୃଦ୍‌ବୋଧ ହେଲା, ଆହା ମୁଁ ଯଦି ଗଉଡ଼ ଘରେ ଜନ୍ମ ହୁଅନ୍ତି କେଡ଼େ ଭଲ ନ ହୁଅନ୍ତା । ସରୋବର କୂଳରେ ଠିଆ ହୋଇ ବଂଶୀ ବଜାଇ ଥାଆନ୍ତି । ଗାଁ ମୁଣ୍ଡ ଗୋରୁଙ୍କ ଗହଣରେ କାନ୍ଧରେ ଲଠି ଧରି, ମୁଣ୍ଡରେ ବଡ଼ ଠେକାଟିଏ ବାନ୍ଧି ଗୀତ ବୋଲନ୍ତି କି ଆନନ୍ଦ ବା ନ ହୁଅନ୍ତା । ଏହା ପଲ୍ଲିବାସୀ କୃଷ୍ଣଙ୍କ ଜୀବନର ସ୍ବରୂପ । ତାଙ୍କୁ ପାଗଳ କରିଦେଉଥିବା ରାଧିକା ମଧ୍ୟ ଗଉଡ଼ୁଣୀ ଥିଲେ ।

ବାରମ୍ବାର ତାର ସୌନ୍ଦର୍ଯ୍ୟ ଦର୍ଶନରେ ମନ ଚଞ୍ଚଳ ହୋଇ ଉଠିଲା । ତାର ଗମ୍ଭୀର କନ୍ତୁ କଳା କଳା ଡୋଳା ଲୋଭନୀୟ ଜଣାଗଲା । ମନେ ମନେ ସ୍ଥିର କଲି ସେ କେଉଁଆଡ଼େ ଯାଉଛି ଜାଣିବା ପାଇଁ ଦିନେ ତା ପଛେ ପଛେ ଛପି ଛପିକା ଯିବି ।

ଶେଷରେ ଦିନେ ଆଠଟା ବାଜିବା ମାତ୍ରେ ଧଡ଼ପଡ଼ ଉଠି କେଉଁଆଡ଼କୁ ନ ଯାଇ ସିଧା ଗାଁ ମୁଣ୍ଡ କବାଟ ପାଖରେ ଠିଆହେଲି । ଦୁଧ ବିକ୍ରୀ କରି ସମ୍ଭବ ସେ ଘରକୁ ଫେରୁଥିବ । ସେତେବେଳେ ମୁଁ ନ ଜାଣିଲା ପରି ତା ପଛେ ପଛେ ଚାଲିଯିବି । ସୁଯୋଗ ପାଇଲା ମାତ୍ରେ ପଚାରିବି—ତୁ କିଏ ? ତୋର ଏହି ନୟନରେ କାହିଁକି କୁହୁକ ପୂର୍ଣ୍ଣ ହୋଇଛି ? ଗଉଡ଼ ଜାତିରେ ମଧ୍ୟ ତୋପରି ପାଗଳ କରିଦେବା ଅପୂର୍ବ ସୁନ୍ଦରୀ ରହିଛନ୍ତି କି ?

ଏହି ପରି ଅନେକ ଗୁଡ଼ିଏ ପ୍ରଶ୍ନର କ୍ରମ ତିଆରି କରି ଦୁଆରି ପାଖରେ ଠିଆ ହେଉ ନ ହେଉଣୁ ସେ ଦୁଇ ହାତରେ ପଇସା ଗଣି ଗଣି ମୁଣ୍ଡରେ ଖାଲି ଗରା ଥୋଇ ତଳକୁ ଅନାଇ ଦୁଆରୁ ବାହାରି ଗଲା । ମୁଁ ତା ପଛେ ପଛେ ଚାଲିଲି ।

ଶଗଡ଼ ଗୁଳା ରାସ୍ତା । ଉଚ୍ଚ ଢ଼ିପ ଭୂଇଁରୁ ମାଟି ତାଡ଼ି ରାସ୍ତା ତିଆରି ହୋଇଛି ତେଣୁ ଦୁଇ କଡ଼ରେ ମାଟିର କାନ୍ଥ ପଡ଼ିଥାଏ ଉପରେ କଣ୍ଟାର ଗଛ ତଥା କାଇଁଚ ଲତା ମାଳ ଥାଏ । ରାସ୍ତା

ଧୂଳି ଉଡ଼ାଇ ସେ ଖୁବ ଚଞ୍ଚଳ ଚାଲି ଯାଉଥିଲା । ସୂର୍ଯ୍ୟଙ୍କ ଟାଣ ଖରାରୁ ଆଖିକୁ ରକ୍ଷା କରିବା ପାଇଁ ଗୋଟିଏ ହାତରେ ଆଖିକୁ ଛୁପ୍ପା କରୁଥାଏ ଓ ଅନ୍ୟ ହାତରେ କଳସି ଧରିଥାଏ । ହଠାତ୍ ଥରେ ଅଧେ ପଛକୁ ବୁଲି ସେ ମୋ ଆଡ଼କୁ ଦେଖିଲା । ବୋଧହୁଏ ତାର ସନ୍ଦେହ ହୋଇଥିବ ଯେ ମୁଁ ପଛେ ପଛେ ତାର ଅନୁସରଣ କରୁଛି । ସେଥିପାଇଁ ସେ କେତେବେଳେ ଧୀରେ ଚାଲୁଥାଏ ତ କେତେବେଳେ ଖୁବ ଚଞ୍ଚଳ । ମୁଁ ମଧ୍ୟ ତା' ପରି ମୋ ଗତିକୁ ବଦଳାଉ ଥାଏ । ସେହି ମହାମାୟା ମୋହିନୀ ତାଁ ସନ୍ଦେହ ଠିକ୍ କି ନାହିଁ ପରୀକ୍ଷା କରୁଥିଲା ଏକଥା ମୁଁ ମୋଟେ ଜାଣିପାରିଲି ନାହିଁ । ଅନ୍ୟଥା ତାର ପବିତ୍ରତା ତଥା ଶାଳୀନତାକୁ ଦୂଷିତ କରିବାର ମୋର ଉଦ୍ଦେଶ୍ୟ ନ ଥିଲା । ମୁଁ ତାର ସୌନ୍ଦର୍ଯ୍ୟ ଦେଖି ଅନ୍ଧ ହୋଇ ଯାଇ ଥିଲି । ମନଭ୍ରଷ୍ଟ ହେବା ସତ୍ତ୍ୱେ ମୁଁ ମୋ ମନକୁ ନିଜ ଆୟତ୍ତରେ ରଖି ଥିଲି । ମୋର ହୋଶ ଠିକ୍ ରହିଥାଏ । ନିଜର ସମସ୍ତ ଜ୍ଞାନ-ବୁଦ୍ଧିକୁ ହରାଇ ଯେମିତି ଇଚ୍ଛା ସେମିତି ତା ପ୍ରତି ବ୍ୟବହାର କରିବି, ଏତେଦୂର କାମୁକ ମୁଁ ନ ଥିଲି ।

ଏହିପରି ଆମେ ପ୍ରାୟ ଅଧ ମାଇଲ ବାଟ ଚାଲିଥିବୁ କି ନାହିଁ ସେ ହଠାତ୍ ଅଟକି ଗଲା । ସେଠାରେ ଖୁବ ବଡ଼ ବରଗଛ ଥିଲା ଓ ପଥିକଙ୍କ ସୁବିଧା ନିମନ୍ତେ ସେଇ ବର ଗୁପ୍ପିରେ ଗୋଟିଏ କୁଡ଼ିଆ ତିଆରି ହୋଇଥିଲା । ଉପରେ କୋଇଲିର ମଧୁ ତାନ ଶୁଣାଯାଉଥାଏ, ତଳେ ଗାଈ, ମଇଁଷି, ବାଛୁରି ଛେଳି, ଇତସ୍ତତ ଚରୁଥାନ୍ତି । ସ୍ଥାନଟି ଅତୀବ ରମଣୀୟ ।

କୁଡ଼ିଆ ବାହାରେ ଖାଲି କଳସି ଥୋଇ ରାସ୍ତା କଡ଼ରେ ଥିବା ସବୁଜ ଘାସ ଉପରେ "ହେ ରାମ" କହି ଗୋଡ଼ ଟେକି ବସି ପଡ଼ିଲା । ଗଉଡ଼ୁଣୀମାନେ ପ୍ରାୟ ଏହିପରି ବସିଥାଆନ୍ତି ।

ନା ଗିଳିପାରୁଛି ନା ଓଗାଳି ପାରୁଛି—ଏହିପରି ଦ୍ୱିବିଧାବସ୍ଥାରେ ମୁଁ ପଡ଼ିଲି । ଚାଲିବି ନା ଠିଆ ହୋଇ ରହିବି କିଛି ନିଷ୍ପତ୍ତି କରି ପାରୁନଥାଏ । ତା ସହିତ ଆଳାପ କରିବା ବଚୃର ଉଠିଲାମାତ୍ରେ ହୃଦୟ ଧକ୍ ଧକ୍ ହେଲା । ମୁହଁ ଲାଲ ପଡ଼ିଗଲା । ବହୁତ ସାହାସ କରି ତ

ମୁଁ ଏତେପର୍ଯ୍ୟନ୍ତ ଆସି ପାରିଲି, ବର୍ତ୍ତମାନ ଗୌରବର୍ଣ୍ଣୀ ଗଉଡ଼ୁଣୀ ମୋର ସମସ୍ତ ଶକ୍ତିକୁ ଛଡ଼ାଇ ନେଲା ।

ବୁଝି ବିଚାରି ମୁଁ ସେହି ରାସ୍ତାରେ ଅଗ୍ରସର ହେଲି । ତା ପାଖରେ ପହଞ୍ଚି ଆଗକୁ ଦୁଇ ପାହୁଣ୍ଡ ପକାଇବା ମାତ୍ରେ ସେ ପଚାରିଲା "ଚନ୍ଦନ ଭାଇ କୁଆଡ଼େ ଯାଉଛ ?" ସେ ପ୍ରତି ଦିନ ମୋ ଘରକୁ ଆସେ ତେଣୁ ମୋତେ ଖୁବ୍ ଭଲ ଭାବରେ ଚିହ୍ନିଛି । ଅକସ୍ମାତ ଯେ ସେ ମୋ ସହିତ ଆଳାପ କରିବ ମୁଁ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲି । ମୁଁ ତା ପଛେ ପଛେ ଯାଉଛି ଏପର୍ଯ୍ୟନ୍ତ, ଆସିଲାଣି ସେ ଜାଣିଥିଲା ? ମୋ ବିଷୟରେ ସେ କଅଣ ଯେ ଭାବୁଥିବ ? ଏପରି ନାନା ପ୍ରକାର ଚିନ୍ତା ହୃଦୟକୁ ଆଲୋଡ଼ିତ କରି ପକାଇଲା । ଯା ହେଉ ତା ପ୍ରଶ୍ନର ଉତ୍ତର ଦେବାକୁ ତ ହେବ । କଅଣ ବା ଉତ୍ତର ଦେବି ? ବ୍ୟଗ୍ରତା ଯୋଗୁଁ ମୁଁହରୁ ବାହାରି ଗଲା "ତୁମର ଗାଁ ଦେଖିବା ପାଇଁ ।" ପରେ ଚେତନା, ଫେରିଲି ମୁଁ କଅଣ ଯେ କହି ଦେଲି । ତା ଗାଁ ଦେଖିବାରେ ମୋର କି ପ୍ରୟୋଜନ ? ବର୍ତ୍ତମାନ ମୋ ମନର ଦୁର୍ବଳତାକୁ ସେ ନିଶ୍ଚୟ ଜାଣି ପାରିଥିବ । ତା ଇଚ୍ଛା ବିରୁଦ୍ଧ ଯଦି ହୋଇଥାଏ, ତେବେ ବୋଧହୁଏ କହିଦେବ—ଚନ୍ଦନ ଭାଇ ଆମ ଗାଁ ଦେଖିବାକୁ ଆସିଥିଲେ---ସେତେବେଳେ ? ମୁଁ ଭାବନା ଜାଲରେ ପଡ଼ିଛି କି ନାହିଁ ସେ କହିଲା—"ସେଥିରେ କଅଣ ଅଛି ଯେ ? କଅଣ ତୁମ ଗାଁ ପରି ହୋଇଥିବ ନା କଅଣ ? ନିଅ ଏଆଡ଼େ ଆସ ଟିକିଏ ଦୁଧ ପିଅ; ବନପଡ଼ିଆ ମଇଁଷି ଦୁଧ । ଏହାର ସ୍ୱାଦ ସବୁବେଳକୁ ମନେ ରହି ଥିବ ।

ମୋ ସମସ୍ୟାର ସମାଧାନ ହୋଇଗଲା । ମୋର ଆଚରଣ ତାକୁ କିଛି ଖରାପ ଜଣାଗଲା ନାହିଁ । ଯେତେବେଳେ ସେ ସ୍ୱୟଂ ମୋତେ ଡାକୁଛି ସେତେବେଳେ ନିଜକୁ ଅପମାନିତ ବୋଧ କରିବାର କୌଣସି କାରଣ ନାହିଁ । ପୁଷ୍ପ ଯେତେବେଳେ ବୁଲବୁଲକୁ ଆହ୍ୱାନ କରେ ବୁଲବୁଲର ଦୋଷ ବା କଅଣ ? ସାପ ଯଦି ନିଜେ ଯାଇ ନାଗେଶ୍ୱର ସମ୍ମୁଖରେ ବସେ ସାପୁଆର ବା ଦୋଷ କଅଣ ? ଯାହା ହେଉଛି ହେଉ । 'ରେ ମନ ! ତୁମେ ତୁମ ଅଭିଳାଷର ବିଭିନ୍ନ ସ୍ୱରୂପ ଦେଖିଯାଅ ।'

"ନା ନା, ବିନା ପଇସାରେ ଦୁଧ ପିଇବି କେମିତି ? କାଲି ଘରେ ଦେଇଦେବି ।" ପିଇବାର ପ୍ରବଳ ଇଚ୍ଛା ଥାଏ । କିନ୍ତୁ ପ୍ରଥମ ଥର କହିବା ମାତ୍ରେ ଯଦି ମୁଁ ପିଇ ନିଏ ତେବେ କଅଣ ନ ପଛେ ମୂର୍ଖ ବୋଲାଇବି ?

"ଘରେ ଯେତେବେଳେ ନେବାକୁ ଥିବ ନେବ, କିନ୍ତୁ ଏଠି ତ ପିଅ । ସେଠି ଏମିତି ସୁନ୍ଦର ବରଗଛ ଛାୟା ମିଳିବ ବା କେଉଁଠୁ, ପକ୍ଷୀର କାକଳି, ଫେରେ ମୋ ହାତରୁ ଦୁଧ ପାଇବା ଭାଗ୍ୟରେ ମିଳିବ କେଉଁଠୁ ? ଭଉଣୀ ଜାଣିବା ମାତ୍ରେ ଉତ୍ତମ ମଧ୍ୟମ ମିଳିବ ।"

ଯଦି କେହି ଏହି ସ୍ତ୍ରୀକୁ ମୂର୍ଖ କହେ ତେବେ ଏତିକି ମାତ୍ର କହିବାକୁ ଚାହେଁ ଯେ, ଏହା ନିକଟରେ କେବଳ ଅକ୍ଷର ଜ୍ଞାନର ଅଭାବ ରହିଛି ମାତ୍ର । ଯଦି କେହି କହେ ଯେ ଏହାକୁ କଥା କହିବା ଜଣାନାହିଁ ତେବେ ଏତିକି ମାତ୍ର କହିବାକୁ ହେବ ଯେ ଏହାର ଭାଷା ସହରୀ ଚାତୁର୍ଯ୍ୟ ପୂର୍ଣ୍ଣ ବିଳାସୀ ଭାଷା ନୁହେଁ । ପ୍ରକୃତି କୋଳରେ ଜନ୍ମଲାଭ କରି, ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କୌଶଳ ଜାଣି ପାରିଥିଲି । ବର୍ତ୍ତମାନ ଏହି ଗ୍ରାମୀଣ ତଥା ମଧୁର ଲାଳିତ୍ୟପୂର୍ଣ୍ଣ ଭାଷା ପ୍ରାକୃତିକ ସୌନ୍ଦର୍ଯ୍ୟର ଆଭାସ ମୋତେ ଜଣାଉଥାଏ । ତାହା ପୁଣି ଏପରି ଏକାନ୍ତ ନିର୍ଜନ ସମୟରେ । ମୋ ହୃଦୟ-ସ୍ଥିତ ସମସ୍ତ ଭାବନାକୁ ସ୍ପର୍ଶକରି ସରଳ ହୃଦୟରେ ମୋ ସହିତ ଆଳାପ କରୁଥାଏ । ମୁଁ କ୍ଷଣ ପ୍ରତିକ୍ଷଣ ତା ଜାଲରେ ଆବଦ୍ଧ ହେଉଥିଲି ।

"ଆଚ୍ଛା ଦୁଧ ପିଇବା ସ୍ୱୀକାର କରୁଛି କିନ୍ତୁ ସର୍ତ୍ତ ରହିଲା ଯେ ତୁମେ ଏହାର ପଇସା ନେବ ।"

"ପାଗଳ ହେଲ ନା କଅଣ ? ଏମିତି ପଇସା ନିଆଯାଏ ? ମୋ ରାଣ ଯଦି ନ ପିଅ·····" କହି ଦୁଧ ଗ୍ଲାସଟି ସେ ମୋଆଡ଼କୁ ବଢ଼ାଇ ଦେଲା । ଭାବିଲି ଅଧିକ ଟାଳ—ମଟାଳ କରିବା ଠିକ୍ ନୁହେଁ । ହଁ—ନାହିଁ, ତଥା ଛଳନା ଯଦି କରେ ତାହେଲେ ଏହି କମନୀୟ କମଳଟି ମଉଳିଯିବାର ସମ୍ଭାବନା ରହିଛି । ମୁଁ ତା ହାତରୁ ଦୁଧ ମଗା ଗ୍ଲାସଟି ନେଇ ଗଟ୍ ଗଟ୍ କରି ଦୁଧତକ ପିଇଦେଲି । ସେଥିରେ ଚିନି ପଡ଼ି ନଥିଲା ନା ଗରମଥିଲା କିନ୍ତୁ ପ୍ରକୃତରେ ବଡ଼ ସ୍ୱାଦୁ ଲାଗିଲା । ସ୍ୱାଭାବିକ ତ ଦୁଧ ସ୍ୱାଦୁ ଲାଗେ । ଯେଉଁମାନେ ତଟକା ଦୁଧ ପିଅନ୍ତି ସେମାନେ ତା ସ୍ୱାଦ ଭଲଭାବେ ଜାଣନ୍ତି ।

ପୁଣି ଏ ତ ଗୋଟିଏ ରୂପବନ୍ତୀ ସ୍ତ୍ରୀ ହାତରୁ ସେ ଫେର ଆଗ୍ରହ ପୂର୍ବକ ଗୋଟିଏ ପ୍ରେମପାଗଳକୁ ପିଇବାକୁ ମିଳିଥିଲା ।

"ଗଉଡୁଣୀ ! ତୁମେ କେଉଁ ଜାତିର ?" ଦୁଧ ପିଉଁ ପିଉଁ ମୁଁ କଥା ଆରମ୍ଭ କଲି ।

"ଯା, ତୁମେ ତ ଭ୍ରଷ୍ଟ ହୋଇଗଲ—" ସେ କହିଲା । "ନା ନା ମୁଁ ସେଥିପାଇଁ ପଚାରୁ ନାହିଁ, କେବଳ ଜାଣିବା ଉଦ୍ଦେଶ୍ୟରେ ପଚାରୁଛି । କୁହ ଭଲା, ତୁମେ କେଉଁ ଜାତିର ?" "କାହିଁକି, ଆମେ ଗୋରୁ ଚରାଇବା ଗଉଡ଼ ଜାତିର ।" "ତୁମେ କୁମାରୀ ନା ବିବାହିତା ।" ମୋର ପାଗଳାମି ସୀମା ଲଙ୍ଘନ କରୁଥିଲା ।

ସାମାନ୍ୟ ଲଜ୍ଜିତ ହୋଇ କହିଲା—"ବିବାହିତ ।"

"କାହାର ?"

"ହେ ଭଗବାନ ! କଅଣ ମୁଁ ତା ନା ଧରିବି ? ମୋ ଜାତିର କୌଣସି ଗଉଡ଼ ହୋଇଥିବ ।"

"ପ୍ରେମ କାହାକୁ କହନ୍ତି ତୁମେ ଜାଣ କି ?" ମୋର ଚେତନା ଲୋପ ପାଇଥିଲା । କଅଣ ପଚାରି ଯାଇପାରେ ଆଉ କଅଣ ନୁହେଁ—ଏହି କାଣ୍ଡଜ୍ଞାନ ମଧ୍ୟ ହରାଇ ବସିଥାଏ । ସେ ମୋ ପ୍ରଶ୍ନ ବୁଝିପାରିଲା ନାହିଁ ।

"କଅଣ କହିଲେ ?"

"ପ୍ରୀତି ନାମକ କୌଣସି ବସ୍ତୁକୁ ତୁମେ ଜାଣିଛ ? ତୁମେ କଅଣ ପତିର ପ୍ରିୟତମା ?"

"ଚନ୍ଦନ ଭାଇ ! ତୁମେ ପାଗଳ ହୋଇ ଗଲଣି ।"

"ନା, ନା; କେବଳ ଏହି ପ୍ରଶ୍ନର ଉତ୍ତର ଦେବାକୁ ହେବ । ତୁମର ପାଇଁ ମୁଁ ଆଜ ଏଠାକୁ ଆସିଛି । ଗଳରେ କଥା କହିବା ପାଇଁ ଡରୁଥିଲି । କୁହ, କୁହ, ବର୍ତ୍ତମାନ ଯଦି ଜବାବ ନଦିଅ ତେବେ ମୋ ରାଣ—"କହି ମୁଁ ତା ଆଗରେ ବସିଗଲି । ମଝିରେ ଦୁଧ କଳସୀ ଥୁଆ ହୋଇଥାଏ ।

"ଆହା...... ! ମୁଁ ମୋର "ଷ୍ଟୋକେଇଟି କେଉଁଠି ଭୁଲି ଆସିଛି ।" କହି ସେ ଠିଆ ହେଲା । ଏ କଥା ଶୁଣି ମୁଁ ଚମକିଲି । "ଚନ୍ଦନ ଭାଇ ! ମୋ କଳସୀ ଦେଖୁଥିବ । ମୁଁ କେଉଁଠି ଗ୍ରେକଡ଼ ଷ୍ଟୋକେଇ ଭୁଲି ଆସିଛି । ସଙ୍ଗେ ସଙ୍ଗେ ନେଇ ଆସିବି ।"

ରାଜି ହେବନାହିଁ କାହିଁକି ? ସେ ଯଦି ଦାନସାଗର ଖରାରେ ବସିବାକୁ କହନ୍ତା ତେବେ ବି ମୁଁ ରାଜି । ଏ ତ ଅଳ୍ପ ସମୟର କଥା ।

"ହଁ ହଁ ଯାଅ, ନେଇଆସ । ମୁଁ ଏହି କୁଡ଼ିଆରେ ବସିଛି ।"

ରାସ୍ତାରେ ବସିବା ଦେଖି କାଳେ କିଏ କିଛି ଭାବିପାରେ ସେଥିପାଇଁ କଳସୀଟି ଧରି କୁଡ଼ିଆ ଭିତରେ ବସିଲି । ଭିତରେ ଜଣେ କେହି ତୃଣଶଯ୍ୟା ବିଛେଇଥାଏ । ଘାସ ନଡ଼ା ଛପର, ସେଥିରେ ବାବୁଲ କାଠ ଲାଗିଥିଲା । ପଛ କାନ୍ଥରେ ଗୋଟିଏ ଝରକା ଥିଲା । କାନ୍ଥକୁ ଆଉଜି ଗୋଡ଼ ଲମ୍ବେଇ ମୁଁ ବସିଲି । ଆହା ! ଗଉଡୁଣୀ, ତୋର ପଲ୍ଲିଭାଷାରେ କି ମଧୁରତା ରହିଛି । ଆଚ୍ଛା ଆଜି ତାକୁ ଆଉ ନ ଛାଡ଼େ । ଆଳାପ ପ୍ରତ୍ୟାଳାପରେ ଘର କଥା ତାକୁ ଭୁଲାଇ ଦେବି । ଦେଖେ, ସେ ମୋତେ ଗାଈ ଚରାଇବା ଶିଖାଉଛି କି ନାହିଁ ? ସେ ଯଦି ପତଳା ଶାଢ଼ୀ, କସ ବ୍ଲାଉଜ୍ ତଥା ରେଶମୀ ଘାଘରା ପିନ୍ଧନ୍ତା ତାହେଲେ କପଟରୂପଶଜନ୍ତା ? ଖୋସାରେ ଗୋଲାପ ଫୁଲ; ଗଳାରେ ଗୋଟିଏ ସୁନା ମୋତି ମାଳା ଓ ଏହିପରି ଉନ୍ମତ୍ତ ଗତିରେ ଚାଲି ଆସନ୍ତା, ତେବେ କାହାକୁ ବା ମୋହିତ ନ କରନ୍ତା ? କଳ୍ପନା ତରଙ୍ଗରେ ମୁଁ ତା ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରୁଥିଲି ଓ ନିଜେ ସେଇ କାଳ୍ପନିକ ଛବିର ମୋହମାୟାରେ ଅଧିକରୁ ଅଧିକ ଆବଦ୍ଧ ହେବାକୁ ଲାଗିଲି । ତା ବାସନରେ କାହା ନାମ ଲେଖା ହୋଇଛି ଦେଖିଲି । ଅସ୍ପଷ୍ଟ ଅକ୍ଷରରେ "ଦଲି" ମାତ୍ର ପଢ଼ି ହେଉଥିଲା । ଅନୁମାନ କଲି ଯେ, ଗଉଡୁଣୀର ନାମ ଦଲି । କିନ୍ତୁ ବାସନରେ ସ୍ତ୍ରୀ ର ନାମ କାହିଁକି ଲେଖା ହୋଇଛି ? ବୋଧହୁଏ ମା' ଘରୁ ଶ୍ୱଶୁର ଘରକୁ ଆସିବା ସମୟରେ ଏହି ବାସନ ମାତା-ପିତା ଦେଇଥିବେ । ବାସନଗୁଡ଼ିକୁ ବାହାର ଭିତର କେଡ଼େ ପରିଷ୍କାର ରଖିଛି ସତେ । ତେଣୁ ଏଥିରେ ଦୁଧର ଶୋଭା ବୃଦ୍ଧି ପାଉଛି ଓ ଭଲ ଦେଖା ଯାଉଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ପାତ୍ରର ସ୍ୱଚ୍ଛତା ଦୁଧର ଉତ୍ତମତାର କାରଣ ହୋଇଥାଏ । ସେ

ତାର ଶମ୍ପୂଳା ସାଥିରେ ନନେଇ କାହିଁକି ଗଲା ? ଏହାକୁ ମୁଣ୍ଡରେ ରଖି ଯେତେବେଳେ ଗାଁକୁ ଆସେ ଓ 'ଦୁଧ ନଅ' ବୋଲି ଡାକ ଦିଏ ସେତେବେଳେ ତାର ଡାକ ଜଣାଯାଏ ଯେପରିକି କେହି ପ୍ରବୀଣ ଗୀତଆଳାପ କରୁଛି । ତାର ଡାକ ଅର୍ଦ୍ଧ ଜାଗ୍ରତ ଅବସ୍ଥାରେ ପ୍ରାତଃକାଳର ଶୁଭ ସ୍ୱପ୍ନପରି ଲାଗେ ଓ ସାରା ଦିନ ଆନନ୍ଦରେ କଟିଯାଏ । ଗାଁ ସାରା ନିମନ୍ତେ ସେ ଆଶୀର୍ବାଦ-ବାହିକା ସମ ଥାଏ ।

ଏପରି ନାନା ପ୍ରକାର ବିଚାର କରୁ କରୁ ପ୍ରାୟ କୋଡ଼ିଏ ମିନିଟ ଖଣ୍ଡେ ବସିଥିବି କି ନା ସେ ଆସି ପହଞ୍ଚିଲା ଓ ପଚାରିଲା—"ବସିଛନ୍ତି କି ?"

"କଅଣ ଖୋଜେଇ ପାଇଲି ?"

"ନା ଭାଇ ! ଚାରି ପାଞ୍ଚ ଘରେ ପଚାରି ଆସିଲି କିନ୍ତୁ କେଉଁଠି ହେଲେ ଖୋଜ ପାଇଲି ନାହିଁ । କେ ଜାଣେ କେଉଁଠି ରଖି ଦେଇ ଆସିଲି । ବର୍ତ୍ତମାନ ଖୋଜି ବୁଲିବି ବା କେତେ ?" —ଏହା କହି ନିରାଶ ହୋଇ ବସିଗଲା ।

"ଦଲି"

'ଦଲି' ଶବ୍ଦ ଶୁଣିବା ମାତ୍ରେ ଚକିତ ହେଲା । "ଗାଁରେ ସମସ୍ତେ ମୋତେ ଦୁଧବାଲି କହନ୍ତି ।"

"ଦେଖ, ତୁମ ଗୀତରେ କଅଣ ଲେଖା ହୋଇଛି । ଏଇଟା ତୁମକୁ ବାପ ଘରୁ ମିଳିଛି । ଠିକ୍ କଥା ନା ? ତୁମ ବିବାହ ସମୟରେ ।"

ମୁଁ ତା ସୌନ୍ଦର୍ଯ୍ୟରେ ଏତେଦୂର ନିମଗ୍ନ ହୋଇ ରହିଲି ଯେ କିଛି ଓଲଟା ସିଧା ମୋ ବିରୁଦ୍ଧରେ ଅନୁମାନ କରିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ।

"ତୁମ୍ଭର ପତି କଅଣ ଦ୍ୱିତୀୟ ବିବାହ କରିଛନ୍ତି ?" ଗଳାରେ ଥିବା "**ସୌଭଣୀ ପଦକ**" ଦେଖି ପଚାରିଲି । ମୋର ଦୃଷ୍ଟି ତାର ଗୌର ଶରୀର ଉପରେ ପଡ଼ିବାକ୍ଷଣି ସେ ଲଜ୍ଜିତ ହୋଇ ଦେଖିଲା ଓ ଲୁଗା କାନିଟି ଟିକିଏ ଆଗକୁ ଟାଣି ଆଣିଲା ।

---

ସୌଭଣୀ ପଦକ—ଗୁଜରାଟରେ ଦ୍ୱିତୀୟ ହୋଇ ଆସିଥିବା ବଧୂ ଏକ ରକମର ପଦାର୍ଥ ଗଳାରେ ପିନ୍ଧନ୍ତି । ମୃତ ସୌଭଣୀ ଯେପରି କୌଣସି ଅନିଷ୍ଟ ନ କରେ । ( ଏହାକୁ "ଶୋକ-ପଗଲୁ" ମଧ୍ୟ କହନ୍ତି) ।

"ତୁମେ ଓ ତୁମର ସ୍ୱାମୀ ଦିନ ସାରା କଅଣ କରୁଛ ?"
"ତୁ ବଡ଼ ଦୁଷ୍ଟ ତୁମେ"—କହି ମୁହଁ ଲୁଚାଇ ହସିଲା ।

"ନା, ନା ଏପରି ନୁହେଁ । କହୁ କୁହ ଭଲା, ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ତୁମେ ଦୁଇ ଜଣ କଅଣ କରୁଥାଅ ?" "ଆଉ ବା କି କାମ କରିବୁ ? ଗୋରୁ କାମ । ବଡ଼ ସକାଳୁ ଉଠ ଦାନ୍ତ ଘଷା ଆଦି ନିତ୍ୟ କର୍ମ ସାରି ସେ ବାଛୁରିଙ୍କୁ ଦୁଧ ପିଆନ୍ତି । ଗାଈ ଦୁହନ୍ତି ମୁଁ ମଝିହଁଷି ଦୁହେଁ । ଦୁଧ ଦୁହାଁ ସରିଲେ ଗାଈ ଗୋରୁଙ୍କୁ ଚରା ଦେଇ ଦୁହେଁ ଘରୁ ବାହାରି ପଡ଼ୁଁ । ସେ ପ୍ରତ୍ୟହ ସେ ଆଡ଼େ ଯାଆନ୍ତି ଓ ମୁଁ ତୁମ ଗାଁକୁ ଆସେ । ଦୁଧ ଦେଇ ସାରି ସେ ଆସିବା ପର୍ଯ୍ୟନ୍ତ ମୁଁ ତାଙ୍କ ଅପେକ୍ଷାରେ ଏଠି ବସି ଥାଏ ।"

ହଠାତ୍ ମୁଁ ଚମ୍କି ଉଠିଲି । କାଳେ ତାର ସ୍ୱାମୀ ଆସୁଥିବ ଓ ମୋତେ ତା ସହ ବସିବା ଦେଖି କ୍ରୋଧରେ ଜଳି ଉଠିବ, ତା ହେଲେ ମୋର ସମସ୍ତ ମାନ ସମ୍ମାନ ମାଟିରେ ମିଶି ଯିବ ନିତ ବୋଲାଇବ । ମାଡ଼ ଖାଇବ ସେ ତ ନିଆରା କଥା । ଏହି ବିଚାର ଆସିବା ମାତ୍ରେ ମୁହଁର କାନ୍ତି କୁଆଡ଼େ ଉଭେଇ ଗଲା । ଚନ୍ଦ୍ରା ଗ୍ରାସ କଲା । ଚାଲିଯିବା ଉଦ୍ଦେଶ୍ୟରେ ହାତରେ ଟୋପୀ ଧରି ବାହାରିଲି ।

"ଆପଣ ମୋତେ ଭୟ କରନ୍ତୁ ନାହିଁ । ଆଜି ତ ମୁଁ ଏକା ଆସିଛି । ସେ ଘିଅ ବିକି କରିବାକୁ ଯାଇଛନ୍ତି ।" ଜଣାଗଲା ଯେପରି ପୁଣି ଜୀବନ ଫେରି ପାଇଲି । ଆଳାପ ଆରମ୍ଭ ହେଲା ।

"ତୁମର ସ୍ୱାମୀ ବଂଶୀରେ କି ରାଗ—ଆଳାପ କରନ୍ତି ଯେ ତୁମେ ମନ୍ତ୍ରମୁଗ୍ଧ ହୋଇ ଠିଆ ହୋଇ ଶୁଣୁଥାଅ ? ମୁଁ ପୋଖରୀ ହୁଡ଼ରେ ଠିଆ ହୋଇ ବଂଶୀ ବଜାଇବି, ତେବେ ମୋତେ ବଂଶୀ ବଜେଇ ଆସିବ ତ ? "ହଁ, ହଁ, ଆସିବନି କାହିଁକି ? କିନ୍ତୁ ତୁମକୁ ଆମ ପରି ହେବାପାଇଁ ଭଲ ଲାଗୁଛି କାହିଁକି ?

"କେବଳ ତୋରି ପାଇଁ ଦଳି ! ମନେ ହେଉଛି ତୁ ଯାହା ଖାଉଛୁ ମୁଁ ତାକୁ ଖାଇବି, ତୋ ହାତର ମୋଟା ମୋଟା ରୁଟି ଖାଇ ହଜମ କରିବି ପୁଣି ତୋ ଗୋରୁଙ୍କୁ ଚରାଇବାକୁ ଯିବି । ତୋ ଗାଁକୁ ଆଉ କେତେ ବାଟ ରହିଲା ?"

"ଗୃହ ପାଖୋଟି ବିଲ ପରେ ଦେଖ ସେହି କୁଡ଼ିଆ ସବୁ ଦେଖା ଯାଉଛି। ଆପଣ ମୋ ଘରେ ରହିବେ ? ଆମେ ତ ତଳେ କନ୍ଥା ପାରି ଶୋଉ କମ୍ବା ବାଡ଼ାରେ ଖଟିଆରେ। ପାଖରେ ଗୋରୁ ଗାଈ ବନ୍ଧା ଯାଏ ରାତି ସାରା ସେମାନେ ହମ୍ବାଳି ଛାଡ଼ନ୍ତି। ତୁମ ପରି ଲୋକଙ୍କୁ ସେଠି ଭଲ ଲାଗିବ ତ ?"

"ମୋତେ ଖୁବ୍ ଭଲ ଲାଗିବ। ଆଉ ତୁମ ପରି ସ୍ତ୍ରୀ ଟିଏ ଯଦି ମୋ ପାଖରେ ରହେ ତେବେ ତ ଘରକୁ ଯିବା ନାମ ଆଉ ଧରିବ ନାହିଁ।"

ତା କଥାବାର୍ତ୍ତାରୁ ମୁଁ ଭାବିଥିଲି ଯେ ସେ ମୋ ପ୍ରତି ଆସକ୍ତ ହେଲାଣି। ଧୀରେ ଧୀରେ ତା ହୃଦୟ ରାଜ୍ୟକୁ ମୁଁ ଜୟ କରି ନେଲି। ସେ ତାର ସମସ୍ତ ଭାବନା ଧୀରେ ଧୀରେ ବ୍ୟକ୍ତ କଲାଣି। ମୋ ହୃଦୟ ଆଗାରେ ପୁଷ୍ପ ସମ ପ୍ରସ୍ଫୁଟିତ ହେଲା। ପ୍ରଭାତ ସଦୃଶ ମୋର କଳ୍ପନା ବୃଦ୍ଧି ପାଇଲା। କେତକୀ ସଦୃଶ ମନ ଦୋଳାୟିତ ହେଲା। ସେ ହାତରେ କୁଟା ଖିଅଟି ଧରି ଭୂଇଁରେ ରେଖା ଟାଣୁଥାଏ, କେତେବେଳେ ବଙ୍କା କରି ତାକୁ ଧନୁର ଆକାର ଦିଏ କେତେବେଳେ ହାତରେ ଛିଣ୍ଡାଇ ଖଣ୍ଡ ଖଣ୍ଡ କରି ଦିଏ। ଏହି ପରି ଖେଳୁଥାଏ ଓ ବ୍ୟସ୍ତତା ବିହୀନ, ଭୟ ଓ ଲଜ୍ଜା ଶୂନ୍ୟ ଚିତ୍ତ ପରିଚୟ ମିଶି ଭଳି ସେ ମୋ ସହିତ ଆଳାପ ମଧ୍ୟ କରୁଥାଏ।

ଅଳ୍ପ କ୍ଷଣ ପାଇଁ ଆମେ ଦୁହେଁ ଶାନ୍ତ ରହିଲୁ। ଏମନ୍ତିରେ ବିଜୁଳି ଚମକରେ ବାଳକର ହୃଦୟ ଯେପରି ଭୟରେ ଥରି ଉଠେ, ସର୍ବତ୍ର ଆନନ୍ଦ ବ୍ୟାପ୍ତ ଥିବାବେଳେ ହଠାତ୍ ଦୁଃଖ ପ୍ରବେଶ କଲେ ଯେପରି ଲାଗେ ଠିକ୍, ସେହି ପରି ହଠାତ କୁଡିଆର ଖୋଲା ଝରକା ଦେଇ ମୋ ପତ୍ନୀ ଉଙ୍କିଲା ଓ ରକ୍ତଚକ୍ଷୁ ଘୂରେଇ ମୋ ଆଡ଼କୁ ଚାହିଁଲା।

ତାକୁ ଦେଖିବା ମାତ୍ରେ ମୋ ଶରୀର ଥରଥର ପରି ଥରିଲା। ଭୟଙ୍କର କ୍ରୋଧ ଯୋଗୁଁ ତା ଆଖିରେ ଲୋତକ ଢଳଢଳ ହୋଇ ଉଠିଲା। ଏପରି ଅବସ୍ଥାରେ ସେ କଅଣ କହିବ କଅଣ ବା ନ କହିବ। ହୃଦୟର ସମସ୍ତ ଉଦ୍‌ଗାର ଓଗାଳି ଦେବା ଅଭିପ୍ରାୟ ତାର ନିଶ୍ଚୟ ହୋଇଥିବ, ତଥାପି ଗୋଟିଏ ହେଲେ ଶବ୍ଦର ଉଚ୍ଚାରଣ ସେ କଲା ନାହିଁ। କେବଳ

ଅପଲକ ମୋ ଆଡ଼କୁ ଚାହିଁ ରହୁଥାଏ । ସରମରେ ମୋ ଆଖି ତଳକୁ ହୋଇଗଲା । ଦଳ, କପଟି ଦଳ, ଛଳନାପ୍ରିୟ ଦଳ—ନିଜ ଶାଢ଼ୀରେ ମୁହଁ ଲୁଚାଇ ହସୁଥାଏ ।

ଚିତ୍ରକାରକଙ୍କୁ ଏଠି ତିନୋଟି ଚିତ୍ର ଚିତ୍ରିତ କରିବାକୁ ପଡ଼ିବ । ଗୋଟିଏ ମା କାଳିଙ୍କର, ଦ୍ୱିତୀୟଟି ଯାଦୁଗରର, ତୃତୀୟଟି ଗୋଟିଏ ମୂର୍ଖ ବୁଦ୍ଧିହୀନ ମାନବର ।

* * *

# ଏ ଘର—ସେ ଘର

ଶ୍ରୀ ଜୟନ୍ତୀ ଦଲାଲ ।

ସଣ୍ଡୁଆସିରେ ଧରିଥିବା ଷ୍ଟିଲ୍‌ ଗିନାଟି କପର ହାତରୁ ଖସିଲା କେଜାଣି, ତଳରେ ଝୁଙ୍କ ସାଏଁ, ସାଏଁ ହେବା ବଦଳରେ କଡ଼କଡ଼ ହୋଇ ଫୁଟୁଥିବା ତେଲ ଭୂଇଁରେ ପଡ଼ଗଲା । ସବିତା ପୋଡ଼ୁ ପୋଡ଼ୁ ଅଳ୍ପକେ ରକ୍ଷା ପାଇଗଲା । ଛିଟିକିବା ଯୋଗୁଁ ଗୋଟେ ଦୁଇଟା ଫୋପା ତା ଦେହରେ ପଡ଼ ଥାଏ । କିନ୍ତୁ ତାର ସେ ଦିଗକୁ ଲକ୍ଷ ନ ଥାଏ । ତଳେ ଲୋଟୁଥିବା ଗିନାରୁ ଯେଉଁ ଶବ୍ଦ ବାହାରୁ ଥାଏ ତାଯୋଗୁଁ ଗୋଟିଏ ଭିନ୍ନ ପ୍ରସଙ୍ଗର ସ୍ମୃତି ସତେଜ ହୋଇ ଉଠିଲା———— ।

କିନ୍ତୁ ସେଇଟା ଥିଲା ଷ୍ଟେନଲେସଷ୍ଟିଲ ଗିନା । ଥାଳରେ ପରଶୁ-ଥିବା ସମୟରେ କ୍ରମତ ସେହି ଗିନାଟି ଦେହରେ ବାଜବାହାରି କି ସୁନ୍ଦର ମଧୁର ଟୁନ୍‌ ଟୁନ୍‌ ଧ୍ୱନି ବାହାରୁ ଥାଏ । ନୂଆ ଗିନା, ନୂଆ ଥାଳ, ଆମେ ମଧ୍ୟ ନୂଆ ଥିଲୁ ।

ସବିତାର ମନ ମନା କଲା । ଯାହା ବିତି ଯାଇଛି ତାକୁ ଯଦି ବାରମ୍ବାର ସ୍ମରଣ କରାଯାଏ ତେବେ ସେହି ସ୍ମୃତିରେ ଥିବା ମଧୁରତା ଟିକକ ନଷ୍ଟ ହୁଏ । ମନ ପୋଡ଼ବାକୁ ଲାଗେ । ଭଲା ବର୍ତ୍ତମାନ ମନକୁ ଆହୁରି ପୋଡ଼ବାରେ କି ଲାଭ ?

କିନ୍ତୁ······କିନ୍ତୁ······ତାର ସ୍ମରଣ ଆପେ ଆପେ ହୋଇଯାଏ । ଏହାର କି ଉପାୟ ? ମନରୁ ଭୁଲାଇ ଦେବାକୁ କହିବା ଅତି ସହଜ । ଅନ୍ୟକୁ ଉପଦେଶ ଦେବା ମଧ୍ୟ ଅତି ସହଜ । କିନ୍ତୁ କାର୍ଯ୍ୟରେ ପରିଣତ କରିବା ଅତି କଠିନ ହୋଇଥାଏ । ଭୁଲି ଯିବ ? କ'ଣ ଭୁଲି ଯିବ ? କେତେବେଳେ ଭୁଲିଯିବ ? କି ପରିମାଣରେ ଭୁଲିଯିବ ?

ସବିତା ପୁଣି ଠିଆ ହୋଇ ସଣ୍ଡୁଆସି ସାହାଯ୍ୟରେ ଝୁଙ୍କ ଗିନାଟିର କଡ଼କୁ ଦାବି ଧରିଲା । ପରନ୍ତୁ ମନକୁ ଦାବି ଦେବା ପାଇଁ, ଉଚ୍ଛୁଳି

ଉଠୁଥିବା ସଂସ୍କରଣକୁ ଧାକ ଦେବା ପାଇଁ କ ଅସ୍ତ୍ର ବା ସେ ପ୍ରୟୋଗ କରିବ ?

ସେ ଘର......

ହୃଦୟରେ ଏହି ଶବ୍ଦର ଆକାର ରୂପ ନେବା କ୍ଷଣି ତାର ସମସ୍ତ ଶରୀର ଥରି ଉଠିଲା । ସେ ଘର । ,, ବଚନ କଥା । କଲେଜରେ ପଢ଼ୁଥିବା ସମୟରେ ଅଧ୍ୟାପକଙ୍କ ଦ୍ୱାରା ମୁଖସ୍ଥ କରାଯାଉଥିବା ବ୍ୟଞ୍ଜନା ମଧ୍ୟ ଇଦୃଶ ମର୍ମଭେଦୀ ହୋଇ ପାରେ ? ସେତେବେଳେ ଏହା "ସେ" ଘର ଥିଲା । ବର୍ତ୍ତମାନ "ଏ" ଘର ହୋଇଛି ।

ବିସ୍ତାରିତ ଘନ ପାଦପ ସଂସାରକୁ ଆପଣା ସୌନ୍ଦର୍ଯ୍ୟ ଓ ସୌନ୍ଦର୍ଯ୍ୟଠାରୁ ବଳି ଆପଣାର ପରମ ରକ୍ଷକ ରୂପେ ଗ୍ରହଣ କରେ ପରନ୍ତୁ ଏହି ନିର୍ଲ୍ଲଜ ଓ କ୍ରୂର ବାୟୁ ସେହି ସଂସାରକୁ ବିସ୍ତାରିତ କରି, ପ୍ରତ୍ୟେକ ଶାଖା ପ୍ରଶାଖାକୁ ଦୋଳାୟିତ କରି ସିଧା ସଳଖ କାଣ୍ଡ ପର୍ଯ୍ୟନ୍ତ ପହଞ୍ଚି ଯାଏ । ଶ୍ରେଷ୍ଠ ବଡ଼ ଆଘାତ ଦେଇ ବାୟୁ ଅନ୍ୟ ସହ ରଙ୍ଗରସ କରିବା ପାଇଁ ଅନ୍ୟତ୍ର ଚାଲିଯାଏ । କିନ୍ତୁ ଶୋଭା; ସ୍ୱଚ୍ଛତା ଓ ସୁରକ୍ଷା, ସବୁ କିଛି ହରେଇ ଦେଇଥିବା ପାଦପର ଯେ କି ଗତି ହୋଇଥାଏ ?

ସବିତା ଠିକ୍ ଏହିପରି ଅନୁଭବ କଲା । ମନ-ମର୍କଟ ଯେ କେତେବେଳେ କେଉଁ ଡାଳରୁ କେଉଁ ଡାଳକୁ ଡେଇଁବ ତାର କିଛି ଖୋଜ ଖବର ଥାଏ କି ? ତା ହୃଦୟରେ ବିଜୟର ସ୍ମୃତି ଜାଗିଲା ।

ଏଇ ଗର୍ଭରେ ତାର ହାଡ଼ ମାଂସର ସୃଷ୍ଟି । ପୂର୍ବ ମାସ ନ ପୂରୁଣୁ ତାର ଜନ୍ମ ହେଲା । ମାତା ଓ ପୁତ୍ର—କାହାରି ଜୀବନର ଆଶା ନ ଥିଲା । କିନ୍ତୁ ଦୁହେଁ ବଞ୍ଚି ରହିଲେ । କିନ୍ତୁ ଆଜ ? ବିଜୟ ସ୍ୱୟଂ ପୁଲିନ ସାଥିରେ ରହିବା ପାଇଁ ନିଷ୍ପତ୍ତି କଲା । ନିଜ ମାଠାରୁ ଭିନ୍ନ ହୋଇ ନୂଆ ମା ସହ । ପୁଣି କହୁଛି କ'ଣ ଯେ......"ସେ ଘରେ ରହିଲେ ଏ ଘରକୁ ଆସି ପାରିବ ନାହିଁ । କିନ୍ତୁ ଏ ଘରେ ରହିଲେ ସେ ଘରକୁ ଯାଇ ପାରିବ, ନୁହେଁ କି ?"

ତାକୁ ସ୍ୱାର୍ଥପର କୁହା ଯାଇପାରେ କି ? ଅତି ବେଶୀ ହେଲେ ବର୍ତ୍ତମାନ ସେ ଦଶ ବର୍ଷର ହୋଇଥିବ । ପୁଲିନ ସହ ଗୃହସ୍ଥାଶ୍ରମ ଜୀବନ ଯାପନ କରି ମୋଟେ ପୂରା ବାର ବର୍ଷ .........।

ସବିତାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଥିଲା । କାଳେ ଉଦ୍‌ବୁଦ୍ଧ ସ୍ମୃତି ତାକୁ ପୋଡ଼ି ନ ଦିଏ ! ଏହି ସ୍ମୃତି କାହିଁକି ? କିଛି କମ ଜଳପୋଡ଼ି ନାହିଁ, ଫେର ଏହି ବିଷାକ୍ତ ବିଷଧର ଦଂଶନକୁ ମନେ କରୁଛି କାହିଁକି ?

କିନ୍ତୁ ମନ ଉପରେ ମୋର ବା କି ଅଧିକାର ?

ଗୃହସ୍ଥାଶ୍ରମ !

ନା, ନା, ନା । ମୋର ସ୍ମରଣ କରିବା ଉଚିତ ନୁହେଁ । ଯା ଘଟିବା କଥା ଘଟିଗଲା । ଯାହାକୁ ସୁଖ ମଣିଥିଲି ସେ ସବୁ ସମାପ୍ତ ହୋଇଗଲା । ରାଗ ଓ ଦ୍ୱେଷ; ଆନନ୍ଦ ଓ ବେଦନା, ତୃପ୍ତି ଓ ଅଭିଳାଷ ।—ସମସ୍ତ ଅତୀତରେ ବିଲୁପ୍ତ ହୋଇଗଲେ । ଅଣୁ ପରମାଣୁକୁ ଭୟଭୀତ କରୁଥିବା କଳା ଭଅଁର ସମ ଜଳପୂର୍ଣ୍ଣ ମେଘରୁ ହୃଦୟ ଖୋଲି ଜଳ ବରଷେ । ପରନ୍ତୁ ପରେ ସେ ଆକାଶକୁ ନିର୍ମଳ, ସ୍ୱଚ୍ଛ, ଭବ୍ୟ ତଥା ପରିଷ୍କାର କରି ଚାଲି ଯାଏ । ଜୀବନରେ ମେଘ ସମ ଖେଳ-ବିନୋଦ କେଉଁଠି ଦେଖିବାକୁ ମିଳେ ? ହଁ ସମସ୍ତ ଚେତନକୁ ଏହା ଘନତମିର ମେଘମାଳାରେ ପୂର୍ଣ୍ଣ କରି ଦିଏ । କିନ୍ତୁ ହୃଦୟ ଖୋଲି ସେ ବରଷି ପାରିଛି କି ? ମେଘ ଗୋଟିଏ ଦୁଇଟା ଟୋପା ପକାଇ ଚାଲିଯାଏ । ଯେତେବେଳେ ବରଷେ ମୂଷଳାଧାରରେ ବରଷୁଥାଏ । ବରଷାର ଜଳବିନ୍ଦୁ ମଉଳି ଯାଇଥିବା, ଉତ୍ତପ୍ତ ଭୂଇଁରେ ଦୟାର ବରଷା ବରଷୁ ନ ବରଷୁ, କିନ୍ତୁ ମେଘ ତ ଗର୍ଜ୍ଜନ ତର୍ଜ୍ଜନ କରି ଭୟ ଦେଖାଇ ଘୋଟି ରହିଥାଏ । ସାହାସ ତଥା ଧୈର୍ଯ୍ୟର ବିନାଶକାରୀ, ଆତ୍ମାକୁ ସର୍ବଦା ଉଦ୍‌ବେଗରେ ପରିପୂର୍ଣ୍ଣକାରୀ ଜ୍ଞାନ ଓ ଧୀର ସମ୍ପୂର୍ଣ୍ଣ ବିନଷ୍ଟକାରୀ ଏହି କଳା ମେଘ, ସାମାନ୍ୟ କଳା ମେଘ············ ।

ସେହି ସମୟରେ ଯେ ଆକାଶରେ ମେଘ ନ ଥିଲା, ସେ କଥା ନୁହେଁ । ଦୁଃଖ କଷ୍ଟ ତ ସେ ସମୟରେ ମଧ୍ୟ ଥିଲା କିନ୍ତୁ ମନ ଯୌବନାବସ୍ଥାରେ ଥାଏ । ଯୌବନରେ ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରୁଥିବା ପ୍ରେମର ଉଷ୍ମା ବିରାଜୁଥାଏ । ପୁଲିନ ମଧ୍ୟ ମୋତେ ପ୍ରେମ କରୁଥିଲା । ସମସ୍ତ ବସ୍ତୁ ଆନନ୍ଦମୟ ପ୍ରତିଭାସିତ ହେଉଥାଏ । ଦିନେ ପୁଲିନ ନିଜେ କହିଥିଲା !

“ଏହି ବଉଳ ଗଛଟିକୁ ଦେଖିଛ । ପବେ-ପବେ ଲକ୍ଷ-ଲକ୍ଷ ଫୁଲ ପ୍ରସ୍ଫୁଟିତ ହୋଇଥିବ । କିନ୍ତୁ ଏମାନେ ପବନର ମୃଦୁ ସ୍ପର୍ଶର

ରହିବା ଦେଖୁଥିବେ— ।" ପବନର ମୃଦୁ ସ୍ପର୍ଶ ! ପାଷାଣକୁ ମଧ୍ୟ ଜୀବନ୍ତ କରି ଦେବ । ଜୀବନ୍ତ ଚୈତନ୍ୟର ମୃଦୁ ତରଙ୍ଗ......... ।"

ଏ ମନ ପୋଡ଼ା ଭ୍ରମରଙ୍କୁ ଭଲ କାହିଁକି ଧରି ବସିଛୁ ? ଅତୀତ ଅମନ୍ଦର ସ୍ମରଣ ମଧୁର ହୋଇଥାଏ—ଏପରି କୌଣସି ଗଜ ମୂର୍ଖ, ବୁଦ୍ଧିହୀନ, ଅନୁଭବ ରହିତ ବ୍ୟକ୍ତି ହିଁ ବ୍ୟକ୍ତ କରିପାରେ । ସୁଖରେ ଅତିବାହିତ କରୁଥିବା ଗୋଟିଏ ଗୋଟିଏ ନିମିଷରେ ସ୍ମୃତିରେ ଶତ ଶତ ରାଜବଂଶୀୟ କଳା ନାଗ ସର୍ପରେ ଦଂଶନ ଜନିତ ବିଷ ଦୃଷ୍ଟି ହୋଇ ରହିଛି । ଏହି କଠୋର ସତ୍ୟକୁ ଯେଉଁ ବ୍ୟକ୍ତି ସ୍ୱୀକାର କରେ ନାହିଁ ସେ ନିରା ଗପୁଡ଼ା, ଗାଲ ବଜେଇବା ବ୍ୟକ୍ତି ମାତ୍ର ।

ସେହି କଥା ଅତୀତରେ ଗୁଞ୍ଜରି ଗଲାଣି । ବଦନାମ ହୋଇ କାର୍ଯ୍ୟରୁ ନିବୃତ୍ତ ହୋଇଥିବା ବ୍ୟକ୍ତି ଘର କାନ୍ଥରେ ରାଜ୍ୟପାଳଙ୍କ ଚିତ୍ର ଟାଙ୍ଗିଇ ରଖିବ କି ? ତୁ ଦୃଷ୍ଟିରୁ ହଟିଗଲୁ । ବଦନାମ ହୋଇ ତୁ ଘରକୋଣରେ ବସି ରହିଲୁ । ପୂଜନ ତୋତେ ତ୍ୟାଗପତ୍ର ଦେଲା । ତୁ ତାର ପ୍ରିୟା ହୋଇ ରହିପାରିଲୁ ନାହିଁ । ଯେଉଁ ଡାଳରେ ଲକ୍ଷ ଲକ୍ଷ ଫୁଲ ବସନ୍ତୋତ୍ସବ ଉପଭୋଗ କରୁଥିଲେ, ସେହି ଡାଳ ଯେମିତି ସେମିତି ଅଛୁଆଁ ରହିଗଲା, ତାହା ଦେହରେ ପବନର ମୃଦୁ ମନ୍ଦ ତରଙ୍ଗ ସୁଦ୍ଧା ସ୍ପର୍ଶ କଲା ନାହିଁ । ସେ ତ ଅନ୍ୟ ବୃକ୍ଷର ଡାଳକୁ ଦୋଳାୟିତ କରିବାକୁ ଚାଲିଗଲା, ସମସ୍ତ ପୁଷ୍ପକୁ ଝଡ଼ାଇବା ନିମନ୍ତେ ଚାଲିଗଲା ।

କଳା-ମେଘମାଳାରେ କ୍ଷୀଣ ବିଦ୍ୟୁତ୍-ରେଖା ଯେପରି ପ୍ରକାଶିତ ହୁଏ ଠିକ୍ ସେହିପରି ବାରଣ କଲେ ସୁଦ୍ଧା ସବିତାର ହୃଦୟ-ମଣ୍ଡଳରେ ସେହି ସ୍ମୃତି ଉଦ୍‌ଭାସିତ ହୋଇଗଲା ।

କିନ୍ତୁ ଏକାନ୍ତରେ ମଧ୍ୟ ସ୍ମରଣ କରିବ ନାହିଁ ? ବିକ୍ରମ ଜନ୍ମ ପୂର୍ବର ଏହି ଘଟଣା । ରେ ଦୁଷ୍ଟା ! ତା ଜନ୍ମ ପୂର୍ବର ଘଟଣା ବୋଲି କହି ବିଷୟଟିକୁ ଟାଳ ମଟାଳ କରୁଛୁ ? ସେହି କ୍ଷଣର ଘଟଣା । ସେ ସମୟରେ ବିକ୍ରମ ଉପସ୍ଥିତ ଥିଲା, ଛୋଟ କୁରୁତା ଖଣ୍ଡେ ପିନ୍ଧିବା ଅବସ୍ଥାରେ ନ ଥାଏ......... । ଭୁଲି ଯା । ଏକାବାରେ ଭୁଲି ଯା ।

ହଁ ସେତେବେଳେ ପୁଲିନ ମୋତେ ବକୁଳ କହୁଥାଏ । ବକୁଳ ଗ୍ରେଟିଆ ରୂପ "ବକ" ।

ବକ ନା; ନା; ବକ (ଦ୍ୱିଷ୍ଟୟୁ) କିନ୍ତୁ ସେତେବେଳେ ତୃଷ୍ଣ କୋଡ଼ଏ ଦିନ ହେଲା ପୁଲିନ ଘରେ ନ ଥାଏ । ସେ ବାହାରକୁ ଯାଇଥିଲା । ମୂଷଳାଧାରରେ ମେଘ ବରଷୁ ଥାଏ । ନଈ–ନାଳ କୂଳ ଲଙ୍ଘନ କରି ପ୍ରବାହିତ ହେଉ ଥାନ୍ତି ! ପୋଲ ଭାଙ୍ଗିଲା, କୋଠାବାଡ଼ ଭୂସାତ୍ଭି ହେଲା, ରେଳ ଯାତାୟାତ ବନ୍ଦ ହେଲା, କିନ୍ତୁ ସେ ସକୁଶଳେ ଫେରି ଆସିଲା । ସେହି ରାତି ! ସେ ମୋତେ ବକୁଳ ବୋଲି ଡ଼ାକିଲା । ସେତେବେଳେ ପ୍ରଥମ କରି ମୋର ଧାରଣା ହେଲା । ନା, ନା, ଠିକ୍ ଜଣାଗଲା । ଏବଂ ମୁଁ ପୁଲିନକୁ ଏ କଥା କହିଥିଲି ମଧ୍ୟ, କିନ୍ତୁ ସେ ତ ନିଜ ଭିତରେ ହିଁ ମଗ୍ନ । ଯାହା ହେଲେ ହେଉ ! ଆଉ କିଛି ଶୁଣିବା ପାଇଁ ତା'ର ଅବକାଶ ନ ଥାଏ । ଅନ୍ୟ କେହି ରହିଲେ ମଧ୍ୟ କ୍ଷତି କ'ଣ ? ଜାଣେ ନା କେତେ-ବେଳେ ମୁଁ ଏକଥା ତାକୁ ପଚାରି ବସିଲି—

"ଜୀବନର ଅନ୍ତିମ କ୍ଷଣ ଯାଏ ତୁମେ କେଉଁଠି ରହିବାକୁ ଇଚ୍ଛା କର । ସେ କିପରି ମିଥ୍ୟାବାଦୀ ଓ ଲମ୍ପଟ ? ଓଠରେ ଓଠ ଲଗାଇ କହିଥିଲା"ଏଇଠି" ! ସେତେବେଳେ ସେ ଅତ୍ୟନ୍ତ ମଧୁର ଜଣାଗଲା ।

ପାଜି, ବଦମାସ, ପୁଲିନ ।

ଗ୍ଲାସ ହାତରେ ସେହିପରି ଥୁଆ ହୋଇ ରହି ଥାଏ । ହଠାତ୍ ସବିତାର ମନେ ପଡ଼ିଲା ଚୁଙ୍କ ନିୋଟି ତା ହାତରୁ ଖସି ତଳେ ପଡ଼ି ଗଲା ଓ ସେ ଅନୁଶୋଚନାରେ ନିମଜ୍ଜିତ ହୋଇଗଲା । ଠିକ ସେହି ଅନୁରୂପକ ଥା ! ଠିକ ସେହି ଭଳି ! ସେ କେତେବେଳେ ବନ୍ଧିଲା ? ଥାଳିରେ ବାଢ଼ିଲା କେତେବେଳେ ? ଖାଇବାକୁ ବସିଲା କେତେବେଳେ ?

ସମସ୍ତ ବିଷୟ ଏହିପରି ହୋଇଥାଏ । ଜୀବନର ଗତି ମଧ୍ୟ ଏହିପରି ! କେତେବେଳେ ବନ୍ଧିଲି ଓ କ'ଣ ବନ୍ଧିଲି ! ଛାଡ଼ ଏଇ କଥା·········।

ପୁଲିନ ଜଣେ ଠକ, ବହୁରୂପିଆ, ମନ ଭୁଲେଇବା ବାଲା, ଧୂର୍ତ୍ତ ତଥା ରଙ୍ଗରସିଆ । ଭ୍ରମର ଶ୍ରେଣୀର । ଜାଲ ପାଡିବା ତା ଜୀବନର ଧନ୍ଦା ।

ମୁଁ ପଚାରିଥିଲି—"ତା ସହିତ ତୁମର କି ସମ୍ପର୍କ ରହିଛି ?"

କାହିଁକି ! ତୁ ଯା, ତା ସହିତ ପୁଣି ମୋର ସମ୍ପର୍କ ?"

"ମନୀଷା କିଏ ?"

"କେଉଁ ମନୀଷା ?"

"ସିଧା, ସ୍ପଷ୍ଟ ରୂପେ କଥାଟି କୁହ ।"

"କିନ୍ତୁ ସ୍ପଷ୍ଟ ରୂପେ ପଚାରିଲେ ତ ?"

"ସିଧା, ସ୍ପଷ୍ଟ ରୂପେ ହିଁ ପଚାରୁଛି । ମନୀଷା କିଏ ? ତା ସହିତ ତୁମର କି ପ୍ରକାର ସମ୍ପର୍କ ରହିଛି ?"

"ତୁ କ'ଣ ଭାବୁଛୁ ?"

ସେ ନିଜେ ତ ଗୋଟିଏ ଅକ୍ଷର ସୁଦ୍ଧା କହି ପାରିଲା ନାହିଁ । ମୁଁ ଭଲ କ'ଣ କହନ୍ତି ? ଅର୍ଥାତ ସେ ଯେମିତି ନିର୍ମଳ ସେମିତି ସ୍ୱଚ୍ଛ ଦର୍ପଣ ରହିଲା ।

"ତୁ କହୁନୁ ? ତୁ କ'ଣ ବୋଲି ଭାବୁଛୁ ? ପାଗଳ ! ମୋ ମନୀଷାତ ମୋ ସମ୍ମୁଖରେ ଉପବିଷ୍ଟ । ତାଁର ମନୀଷା ବିଷୟରେ ତୋର ବା କି ଦରକାର ?"

"ଆଜି ଯଦି ସେହି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ନ୍ତା ତେବେ" ପଚାରନ୍ତି ତାକୁ ଘରେ ରଖିବାକୁ ଚାହିଁ ? କିନ୍ତୁ ସେତେବେଳେ ? ସେତେବେଳେ ତ ସେ ମୋ ଚିବୁକ ଧରି ଆଖିରେ ଆଖି ମିଳାଇ ଥାଏ । ଇତି ମଧ୍ୟରେ ବିକ୍ରମ ଦୌଡ଼ି ଦୌଡ଼ି ଘରେ ପହଞ୍ଚିଲା ଓ ଅବାକ୍ ହୋଇ ବିସ୍ଫାରିତ ନେତ୍ରରେ ଚାହିଁ ରହିଲା । କିଛି ସମୟ ପରେ ପଚାରିଲା—"ବାପା ଆପଣ ମଧ୍ୟ ସିନେମା ଦେଖି ଆସିଲେ ? ସିନେମାରେ ଏହିପରି ହୋଇଥାଏ । ଧ୍ୟାନଦୟାଲ ମାଳଶ୍ରୀ ଦେବୀର ଚିବୁକ୍ ଠିକ୍ ଏଇପରି ଧରି ଥିଲା ···।"

ଧ୍ୟାନଦୟାଲ ଓ ମାଳଶ୍ରୀ ଦେବୀ !

× × × ×

"ସବିତା ! ତୁମକୁ କହିବା ପାଇଁ ମୋର କିଛି କଥା ଅଛି ।"

ପ୍ରାୟ ଗୋଟିଏ ବରଷରେ ମୌନ ଧାରଣ ପରେ ପ୍ରଥମ ଥର ପାଇଁ ସେ ମୋ ସହିତ କଥା ହେଲା ।

ମୁ କହିଲି—"କୁହ"

"ଏହିପରି ଜୀବନ ଧାରଣ କରି ରହିବା ଅପେକ୍ଷା ଆମେ ଅଲଗା ହୋଇ ଯିବା ଭଲ । ତୁମେ କ'ଣ ଉଚିତ ମନେ କରୁ ନାହଁ ?"

"ତୁମକୁ ଯଦି ଠିକ୍ ଜଣା ଯାଉଛି, ତେବେ ମୋର କୌଣସି ଆପତ୍ତି ନାହିଁ," ମୁଁ ଏତିକ ମାତ୍ର ଉତ୍ତର ଦେଲି—ପୁଲିନ ପୁଣି କହିଲା— "ତୁମକୁ ଯେଉଁ ଘର ଭଲ ଲାଗୁଛି, ପସନ୍ଦ ହେଉଛି ସେହି ଘର ରଖି ନିଅ । ଏ ଘର ହେଉ କିମ୍ବା ସେ ଘର ।"

ମୋ ପସନ୍ଦ ମୁତାବକ ଘର ? ·········ଘର ? ଶୀତ, ଗରମ ବର୍ଷାରୁ ରକ୍ଷା କରୁଥିବା ଘର ?

"କିନ୍ତୁ ଏପରି କାହିଁକି ?" ସନ୍ତପ୍ତ ହୃଦୟରେ ମୁଁ ପଚାରି ଥିଲି —"କଣ ମୋର କିଛି ଅପରାଧ ହୋଇଛି ? ମୋର କି ଭୁଲ ? ମୋ ହୃଦୟ କେତେବେଳେ ବଦଳିଛି କି ? କାହାରି ପ୍ରତି ମୁଁ ଦୃଷ୍ଟି ଉଠାଇଛି ? ଗହଣା-ଗଣ୍ଠି ମାଗିଛି ? ଯିଦ୍ ଧରିଛି ? ଦିଅ ମୋ ପ୍ରଶ୍ନର ଜବାବ ଦିଅ ନା "

ଏକଦମ ନିଷ୍ଠୁର ହୋଇ ସେ ମୋତେ ଉତ୍ତର ଦେଲା—"ସବିତା ! ମୋ ମନ ଉଠିଗଲାଣି ।"

"ମନ ଉଠିଗଲାଣି, ଅର୍ଥାତ ଆଉ କେଉଁଠି ଲାଗି ରହିଛି । କ'ଣ ଠିକ୍ କଥା ନା ? କୌଣସି କାରଣ ? ମୋଠାରେ କିଛି ଅଭାବ ରହି ଯାଇଛି ?

"କହ, କେଉଁ ଘରଟି ନେବାକୁ ଚାହୁଁ ।"

"କଣ ଏହି କୋଠା ଦେଖି ମୁଁ ଏଠାକୁ ଆସିଥିଲି ? ନା ଏଇ ଇଟା, ଚୂନ ଛାତ, ଝରକା ଦେଖିଥିଲି ?"

"ନଗଦ ତଥା ଗହଣା ଯାହା ଯାହା ଦରକାର, ଯେତିକି ଦରକାର ସେତିକ ତୁ ନେଇ ଯା ।"

ମୋ ମୁହଁରୁ ବାହାରିଗଲା—"ହରମ ?"

" ଏଇଆକୁ ପଚାର । ତାର ଯେଉଁଠି ଇଚ୍ଛା, ଏଇଠି ରହୁ କିମ୍ବା ସେଇଠି ।

"ତୁମର ଇଚ୍ଛା କ'ଣ ?

"କେଉଁ କଥା ପଚାରୁଛୁ ? "

"ମୋତେ ଦ୍ୱାରକୁ ଠେଲି ଦେଇ·········।"

"ହୁଁ, କହୁ ଦଏ ତୋତେ । ମୁଁ ମନାଖା ସହ.........।"

"ଥାଉ ଥାଉ । ସେତିକି ଥାଉ । ଆଗକୁ ବଢ଼ ନାହିଁ । ପାଜି, ବେହିଆ, ନିର୍ଲଜ୍ଜ ।"

ବିକ୍ରମକୁ ଡାକି ଆମେ ପଚାରିଲୁ । ଆମ ଦୁଇଜଣଙ୍କ ମଧ୍ୟରେ ଯଦି ତୃତୀୟ ବ୍ୟକ୍ତି ଉପସ୍ଥିତ ରହୁଥାଏ ତେବେ ସେ ବିକ୍ରମ ।

କିନ୍ତୁ ସେ ବିଚିତ୍ର ଢଙ୍ଗର । ମୋତେ ପଚାରୁଛି—"ତୁ କେଉଁଠି ରହିବୁ ?"

ଯଦି ଏ ଘରେ ରହୁ ତେବେ ମୁଁ ଯଦି ସେ ଘରେ ରହିବି । "କିନ୍ତୁ ତୁ ଯଦି ଏ ଘରେ ରହୁ ଆଉ ମୁଁ ମଧ୍ୟ ଏ ଘରେ ରହେ ତାହାହେଲେ ତ ମୁଁ ସେ ଘରକୁ ଯାଇ ପାରିବି ନାହିଁ, ନୁହେଁ କି ?"

"ନା, ବିଲକୁଲ ଯାଇ ପାରିବୁ ନାହିଁ । ଯିବାକୁ ମଧ୍ୟ ଦେବି ନାହିଁ । ଆଉ ତୁ କାହିଁକି ବା ନାକ କଟେଇ ସେଇଠିକି ଯିବୁ ? ଲାଜ-ସରମ ନ ଥିଲେ ନାହିଁ ପଛେ, କିନ୍ତୁ ମୋତେ ଏହି ପରି ଦଗା ଦେବା ଲୋକକୁ.............

"ପରନ୍ତୁ ମା ! ମୁଁ ଯଦି ସେ ଘରେ ରହେ ତେବେ ତୋ ଘରକୁ, ଏ ଘରକୁ ଆସି ପାରିବି ତ ?'

ମୋ ନିକଟରେ ଏହି ପ୍ରଶ୍ନର କୌଣସି ଉତ୍ତର ନ ଥିଲା । ପବନ ଧୂଳିକୁ ଚକ୍ରାକାର ଉଡ଼େଇ ଭଉଁରିର ସୃଷ୍ଟି କରେ । ତାକୁ ଉପରକୁ ଆହୁରି ଉପରକୁ ନେଇ ଫୋପାଡ଼େ । କିନ୍ତୁ ଭିତରଟି କେବଳ ଶୂନ୍ୟ, ଶୂନ୍ୟ ଆକାଶ ମାତ୍ର ରହିଥାଏ ।

ମୁଁ ଏ ଘରେ, ସେ ସେ ଘରେ ! ଗହଣା ! ଘର ! ନଗଦ......। ସେ ଯେଉଁଠି କହିଲା ମୁଁ ସେଇଠି ହସ୍ତାକ୍ଷର କରି ଦେଲି । ହୃଦୟରେ କ୍ରୋଧ ପୂରି ରହିଥାଏ । ଜଣାଗଲା ଯେପରି କ୍ରୋଧାଗ୍ନିରେ ମୋ ଶରୀରଟି ଜଳି ଭସ୍ମ ହୋଇ ଯାଉଛି । ଅଯୋଗ୍ୟ, ଦୁଷ୍ଟା, ବେହିଆ ଲୋଫର । ନିର୍ଲଜ କିପରି ଗୁଲି ବୁଲି ପାରନ୍ତି ? ବିକ୍ରମ କହୁଥିଲା.........।

କିନ୍ତୁ ତୁ ଆଉ କାହିଁକି ଏ ସବୁ କଥା ମନ କରୁଛୁ ? ତୁ ତା ମନ-ଲାଖି ହୋଇ ପାରିଲୁ ନାହିଁ । ବିପତ୍ତି ଘୁଞ୍ଚିଲା । ଖେଳ ସରିଲା । କିଆଁ

ଲାଗୁ ତା ମୁହଁରେ । ଆଜି ଚେଚେ, ତୋର ତ ଏହି ଦଣ୍ଡ ଭୋଗିବାକୁ ଥିଲା । ତୋ ସାମର୍ଥ୍ୟ ବାହାରର କଥା । ସମସ୍ତଙ୍କ ବାରଣ ସତ୍ତ୍ୱେ ତୁ ଏହି ମୁହଁପୋଡ଼ା ଉପରେ ଏପରି ମୁଗ୍ଧ ହେଲୁ ଯେ ମା ବାପ ସମସ୍ତଙ୍କୁ ଛାଡ଼ି ଚାଲିଆସିଲୁ ଓ ବିବାହ କଲୁ । ଆଜି ସେହି ରୂପବାନ ରଙ୍ଗ-ରସିଆ ତୋତେ ବାଟରେ ଛାଡ଼ି, ଅନ୍ୟ ଡାଳରେ ଯାଇ ବସିଲା । ଏହାହିଁ ତାର ପ୍ରେମ । ଏଇ ମନୀଷା କ'ଣ ତୋ ଠାରୁ ରୂପବତୀ ? କ'ଣ ଗୌରବର୍ଣ୍ଣୀ ? ତା ରୂପରଙ୍ଗର କୌଣସି ମହତ୍ତ୍ୱ ନାହିଁ । ହଁ, କଇଁଚ ପରି ତା ଜିଭ ଖୁବ୍ ଚାଲୁଛି ତଥା ବାଗ୍‌ବାଣ ନିକ୍ଷେପ କରିବାରେ ସେ ଧୁରନ୍ଧର । ଦୁଷ୍ଟ ନଟୀ······

ବାହାରୁ ଡ଼ାକ ଶୁଣା ଗଲା —"ମା···ଆ···ଆ ।"

ଏ ତ ବିକ୍ରମର ଡ଼ାକ !

"ଖେଳିବାକୁ ଯାଉଥିଲି, ଶୋଷ ହେଲା । ଭାବିଲି ଏ ଘରୁ ପାଣି ପିଇ ନିଏ ।"

ସେ ମୋ ଆଡ଼କୁ ଚାହିଁଲା ନାହିଁ କି ମୁଁ ଦେବା ଖାଦ୍ୟ ଖାଇଲା ନାହିଁ । ନିଜେ ନିଜେ ପାଣି ପିଇ ଚାଲିଗଲା ।

ବିକ୍ରମକୁ ଏ ଘର କିମ୍ବା ସେ ଘରକୁ ଯିବା ପାଇଁ ମନା କରି ହେବ ନାହିଁ ?

କିନ୍ତୁ ପୁଅଟି ଭାରି ବୁଦ୍ଧିମାନ । ତାର ଯଦି ଟିକିଏ ସୁଦ୍ଧା ବ୍ୟବହାର ଉପଯୋଗୀ ଆଚରଣ ଥା'ନ୍ତା ତେବେ ମା ପ୍ରତି ସ୍ନେହ ତା ହୃଦୟରେ ହୁଅନ୍ତା·········· ।

ସବଳୀ ( ସବିତା ) ତୁ କି ନିଷ୍ଠୁର ହୋଇ ଗଲୁଣି । ନିଜ ପୁଅ ପ୍ରତି ତୋର ଏ କି ଧାରଣା ? ପୁଅ ପରର ହୋଇ ଗଲାଣି, ସବଦା ଏହିପରି କହୁଛୁ ?

ଶାନ୍ତ ସରଳ ମନ୍ଦ ଗତିରେ ପ୍ରବାହିତ ନଦୀ ଜଳକୁ ରୋକି ରଖିବା ପାଇଁ ସମସ୍ତେ ଚେଷ୍ଟା କରନ୍ତି । କିନ୍ତୁ ଉଚ୍ଛୁଳୁଥିବା ତଥା ଭୀମକାୟ ତରଙ୍ଗରେ ଉଦ୍‌ବେଳିତ ହେଉଥିବା ବନ୍ୟା ଜଳକୁ ରୋକି ରଖିବା ପାଇଁ ନଈ ଭିଆଣ କଥା ମଧ୍ୟ କେହି ଉଠାନ୍ତି ନାହିଁ, କାହିଁକି ?

ଏ ହେଉଛି ତୋର ପୁଅ । ତୋରି ହାଡ଼ ମାଂସରୁ ଏହାର ହାଡ଼-ମାଂସ ତିଆରି । ତୋ ରକ୍ତରୁ ଏହାର······ରକ୍ତ······ ।

ଫେରି ଚାହଁ, ହେ ମନ ! ବର୍ତ୍ତମାନ ମଧ୍ୟ ପଛକୁ ଫେରି ଚାହଁ ।"

*

କେତେ ଭଲ ଥାଉ, ମନରେ ଯଦି କୌଣସି ବସ୍ତୁର ଧାରଣା ଉଦ୍ରେକ ନ ହୁଏ ? ଆରେ ଶଙ୍କ ! ଭଲ ହୋଇ, ବସ୍ତୁର ଧାରଣାକୁ ରୂପାୟିତ କରିବା ଛାଡ଼ ।

କିନ୍ତୁ ତୁ ଅନ୍ୟ ପାଖରେ କାହିଁକି ବିନତି କରୁଛୁ ? ତୋ ଅଧିକାରରେ ଯାହା ଅଛି ତାକୁ ତ କରୁ ନାହୁଁ, ଅନ୍ୟର ଗୋଡ଼ ଧରୁଛୁ କାହିଁକି ?

ଅଧିକାର !

ନା, ନା, ମୁଁ ଅଧିକାର କଥା କହୁ ନାହିଁ । ହକ-ଦାବୀର କଥା ମଧ୍ୟ କହୁ ନାହିଁ । ମୁଁ ମୋ ଜୀବନକୁ ଏହି ପରି ହାଟ-ବଜାରରେ ବିକ୍ରି କରିବାକୁ ଚାହେଁ ନାହିଁ ।

ପୂଜନ ପ୍ରତି ତୋର ରାଗ ରହିଛି । ତୋର ଅଭିଳାଷାକୁ ଏଇ ପୂଜନ ନଷ୍ଟ ଭ୍ରଷ୍ଟ କରିଦେଲା—ଏଇଥି ପାଇଁ ସେ ପ୍ରବଞ୍ଚୀ, ମିଥ୍ୟାବାଦୀ ?

ସବିତା, ତୋର କି ଉପଯୁକ୍ତର ବସ୍ତୁର ? ତୋ ଜୀବନକୁ ଭସ୍ମ କରିଦେଲା । ଏହାକୁ ତୁ ମିଥ୍ୟାବାଦୀ, ଲମ୍ପଟ କହିବୁ ନାହିଁ ତ ଆଉ କି ବିଶେଷଣ ପ୍ରୟୋଗ କରିବୁ ?

ପରନ୍ତୁ ତୁ ଏହାକୁ················କଅଣ ମୁଁ କହୁ ନ ଥିଲି ? ତାକୁ କ'ଣ ଯେ ସମର୍ପଣ କରି ନ ଥିଲୁ ? ହଁ ମୁଁ ? ଜଣା ଯାଏ ଆଜି କିଛୁ ତାହାଠାରୁ କିଛି ନେବା ପାଇଁ ଓ କିଛି ଦେବା ପାଇଁ ପ୍ରସ୍ତୁତ ରହିଛୁ । —ଏମିତି କଥା ତୁ ଭାବୁଛୁ କାହିଁକି ? ଜୀବନରେ କିଏ କାହାକୁ କ'ଣ ଦିଏ, କାହାରଠୁଁ କ'ଣ ନିଏ ?

ଭଲ କାହିଁକି, ନିଜର ଯୌବନ, ନିଜ ସ୍ନୀତ୍ତ୍ୱ, ନିଜ ମନ, ନିଜ ଦେହ, ନିଜ ସର୍ବସ୍ୱ, ସମସ୍ତ ଜୀବନ············ ।

ଦେଲି, ତୁ ସବୁ କିଛି ଦେଇ ଦେଲୁ । ବୁଦ୍ଧି ବସ୍ତୁର ଦେଲୁ । ହୃଦୟର ସହ ଦେଲୁ କୌଣସି ପ୍ରକାର ଛପାଛପି ନ କରି । ତାକୁ ଦେବା ଯୋଗୁଁ ଆଜି ତୋ ହୃଦୟରେ ଅନୁଶୋଚନା ହେଉଛି ? ଭଲ କଥା, ହୃଦୟର ନିଭୃତ କୋଣରେ ତୁ ଏହି କଥାକୁ ସ୍ୱୀକାର କରିନେ । ସମସ୍ତ କଥା ସହ ସେହି କଥାଟିକୁ ମନେ ରଖିଥା, ଯେତେବେଳେ ପ୍ରଥମ ଥର ପାଇଁ ଦୁଇ ଚକ୍ଷୁର ମିଳନ ହୋଇଥିଲା । ସେତେବେଳେ ଜଣା ଗଲା ଯେମିତି କେହି ତୋ ଶିରା-ପ୍ରଶିରାରେ ଗରମ ଲହୁ ପମ୍ପ କରି ଦେଲା ! ଶରୀର ରୋମାଞ୍ଚିତ ହୋଇ ଉଠିଲା ! ଦେହ ଓ ମନ—

ଧନୁରେ ଟାଣି ହୋଇ ରହିଥିବା ଶରର ଦଶା ସବ ଅନୁଭବ କଲି । ସେ କଅଣ ତୋତେ ଏହିକୁ କଥା କହିବାକୁ ଆସିଥିଲା ? କହିବା ପୂର୍ବରୁ ହିଁ ତୁ··········· ।

ତାକୁ ମିଥ୍ୟାବାଦୀ କହିବ ନାହିଁ ? ବେହିଆ, ନିର୍ଲଜ୍ଜ କହିବ ନାହିଁ ? ମୋ ବାଳକର ପିତା । ମୋର ହୃଦୟଗ୍ରାହୀ । ତାକୁ ଲମ୍ପଟ କହିବ ନାହିଁ ? ତାକୁ ଦୁଷ୍ଟ କହିବ ନାହିଁ ?

ବର୍ତ୍ତମାନ ତୁ ଧରାପଡ଼ିଗଲୁ, ସ୍ୱୀକାର କର । ବର୍ତ୍ତମାନ ତୁ କେଉଁଠି ଯାଇ ପାରିବୁ ନାହିଁ, ସମସ୍ତ ସଂସାରକୁ ତ୍ୟାଗ କରି ଯିବୁ କୁଆଡ଼େ ? ସମସ୍ତଙ୍କୁ ଧରେଇ ଦେବୁ, କିନ୍ତୁ ତୁ ନିଜେ ଆପଣାର ରକ୍ଷା କରିବୁ କିପରି ? ସେଇଠି କି ଅଟକ କରିବୁ ? ସେଇଠି କେଉଁ କାନ୍ଥର ନିର୍ମାଣ କରିବୁ ? ସେଠି କେଉଁଠି ଓ କିପରି ପରଦା ଝୋଡ଼େଇବୁ ?

ତୁ ତାକୁ ଭଲ ପାଉ । ତୋ ହୃଦୟର ପ୍ରତ୍ୟେକ ଅଣୁ-ପରମାଣୁରେ ତୋ ପ୍ରିୟତମର ନିବାସ ରହିଛି । ସତେ ତ ? ତୁ ଭୁଲି ପାରୁ ନାହିଁ । ତାର ନଖ, ଦାନ୍ତ··· ··· ··· ··· ··· କେବଳ ଏତିକି ନୁହେଁ ତାର ପ୍ରତ୍ୟେକ ଛୋଟ ଛୋଟ କଥାକୁ ତୁ ଭଲ ପାଉଛୁ, ପସନ୍ଦ କରୁଛୁ । କୃପଣର ଧନ ସମ ତାହାକୁ ତୁ ନିଜ ହୃଦୟ-ନିଧି କରି ରଖିଛୁ । ସେ ତୋ'ର ପ୍ରିୟତମ । ତୋ ହୃଦୟ ଓ ଶରୀରର ସ୍ୱାମୀ । ଆଜି ଏହି କ୍ଷଣରେ ମଧ୍ୟ ସେ ତୋ'ର ହୃଦୟନାଥ ହୋଇ ରହିଛି ।

ସେ ତୋର ସ୍ୱାମୀ ଅଉ ତୁ ? କେବଳ ପତ୍ନୀ ? ଫୋପାଡ଼ିବା ଯୋଗ୍ୟ ପୁତ୍ତଳିକା ? ରସ ଶୋଷି ନେବା ଆମ୍ବ ଟାକୁ ? ଅଙ୍ଗୁରର ରସହୀନ ଚୋପା ?

ତୁ ମଧ୍ୟ କୌଣସି ସ୍ୱାଭିମାନ ଧାରଣା କରୁଛୁ କି ନାହିଁ ?

କିନ୍ତୁ ତୁ ତ ଆପଣା ସ୍ୱାଭିମାନ ଦେଖାଇ ସାରିଲୁଣି । ସ୍ୱାଭିମାନ ସହ ଆପଣା ବଂଶପରମ୍ପରାଗତ ଆଭିଜାତ୍ୟ ମଧ୍ୟ । ତାର ନିନ୍ଦା କରିବା ତ ଦୂରର କଥା କୌଣସି ତୃତୀୟ ପୁରୁଷକୁ ମଧ୍ୟ ନିଜ କଥାରେ ମଧ୍ୟସ୍ଥ କରିଲୁ ନାହିଁ । ପସନ୍ଦ ନ ହେଲା ତ ନାହିଁ, ଭଲ କଥା । ତୁମର ପଣ ଗଲା, ତୁମର ଖେଳ ସରିଲା, କାହାଣୀ ସରିଲା ।

ଆଜି ସେ ମଧ୍ୟ··············· ।

ଭଉଣୀ ନିଜ କଥା ପୂରଣ କରିବାରେ ଲାଗିଛି । ଟିକିଏ ଅପର ଦିଗ ପ୍ରତି ଦୃଷ୍ଟି ନିକ୍ଷେପ କରି ।

ସେ ଏ ଘର ଦେଲା, ନଗଦ ଟଙ୍କା ଦେଲା ଓ ଗହଣା ଦେଲା । ଶେଷ ଜୀବନ ପର୍ଯ୍ୟନ୍ତ ତୃପ୍ତି ରହିବା ଭଳି ସୁଖ ପ୍ରଦାନ କଲା ।

ଏଥିରେ କୃତଜ୍ଞତା ପୂର୍ଣ୍ଣ କାମ କଣ ହେଲା ? ମୁଁ ତ ସ୍ୱୟଂ ନିଜେ ଆପଣାକୁ ଧୂଳିସାତ୍ କରିଦେଲି । ତାକୁ ସମସ୍ତ ପ୍ରକାରର ସୁଖ ପ୍ରଦାନ କଲି । ତା ପାଇଁ ମୁଁ କେତେ ସେବା-ପୂଜା ନ କରିଛି, ତା ପାଇଁ କେତେ କଷ୍ଟ ନ ଉଠାଇଛି । ତା ପାଇଁ ବିନମଙ୍କୁ ଦେଲି········ ।

ମାନସିକ ତର୍କ ବିତର୍କ କରୁ କରୁ ସବିତା ଏକାବାରେ ସ୍ତବ୍ଧ ହୋଇ ରହିଗଲା । ତା ହୃଦୟରେ ପ୍ରବେଶ କରି ତାଠାରୁ ମଧ୍ୟ ଜୋର୍‌-ଦାର ତର୍କ ବିତର୍କ କାହିଁ ମନ ମଧ୍ୟ ଅବାକ୍ ହୋଇ ରହିଲା । ମୁଁ ତାକୁ ବିନମଙ୍କୁ ଦେଲି ଓ ସେ ମୋତେ ଘର ଦେଲା, ନଗଦ ଟଙ୍କା ଦେଲା, ଗହଣା ଦେଲା । ସେ ମୋତେ ଦେଲା ଓ ମୁଁ ନେଲି ।

ମୁଁ କ'ଣ ଥିଲି ? ମୁଁ କ'ଣ ରହିଲି ?

ତା ପୁତ୍ରର ମାତା ?

ତା ପୁତ୍ରର ମାତା ହେବା ପରିବର୍ତ୍ତେ—ଏ ଘର, ସେ ଘର । ସୁନା ରୂପାର ଗୋଲ ଗୋଲ ମୋହର ! କାରୁକାର୍ଯ୍ୟପୂର୍ଣ୍ଣ ହୀରାମୋତି-ଜଡ଼ିତ ଗହଣା । ପାଣି ପିଇ ବର୍ତ୍ତମାନ ଦୌଡ଼ିଗଲା ମୋର ପୁଅ ବିନମ !

ମୁଁ ଏସବୁ ଗ୍ରହଣ କରି ନିଜକୁ କ'ଣ ପ୍ରମାଣିତ କଲି ? ପୁଲିନଙ୍କୁ ପତି ରୂପେ ଗ୍ରହଣ କରିଥିଲି । ତା ପତ୍ନୀ ବୋଲାଇବାରେ ନିଜକୁ ଅତି ଭାଗ୍ୟବତୀ ମନେ କରୁଥିଲି, ତା ପୁତ୍ରର ମାତା ହେବାରେ ଆନନ୍ଦରେ ମୋ ଗୋଡ଼ ତଳେ ପଡ଼୍ ନ ଥାଏ । ଯାହା କହି ମୁଁ ମୋର ଆପଣାର କହିବାକୁ ସମସ୍ତ ବିଷୟ ତାଙ୍କୁ ପ୍ରେମପୂର୍ଣ୍ଣ ଭାବରେ ସମର୍ପଣ କରିବାରେ ନିଜକୁ କୃତାର୍ଥ ମନେ କରୁଥିଲି । ରେ ମୂର୍ଖ ! ନିଜ ହୃଦୟର ଗଭୀର ଅତଳ ଗର୍ଭରେ ଏହି କଥା ସ୍ୱୀକାର କର ଯେ ଏ ସମସ୍ତ ତୁ ନିଜେ ସହର୍ଷ ଦାନ କରିଛୁ । ବର୍ତ୍ତମାନ ସୁଦ୍ଧା ତୁ ତାହାକୁ ଭଲ ପାଉ । ଏତେ ଗୁଡ଼ିଏ ଘଟଣା ଘଟିଗଲା ପରେ ମଧ୍ୟ ତୋ ହୃଦୟରେ ସେହି ତୋର ସ୍ୱାମୀ । ବର୍ତ୍ତମାନ ମଧ୍ୟ ଯଦି ସେ କହିବ, ତେବେ········ବିନମ, ଦ୍ୱିତୀୟ ବିନମ ।

କେ ଜାଣେ କି ପ୍ରେରଣା ମିଳିଲା ଯେ, ସବିତାର ଗଳା ସିଧା ସଳଖ ହୋଇଗଲା । ଅକଳ୍ପନୀୟ ମଦାଳସରେ ହୃଦୟ ପୁରି ଉଠିଲା । ହୃଦୟରେ ପ୍ରବେଶ କରି ଦୁନିଆ ସାଗର ସମସ୍ତ ବର୍ଷାକୁ ଜନ୍ମସମ ବର୍ଷାକୁ ଶୁଙ୍କରେ ମାରି ହୃଦୟକୁ ଚଳୁଣିରେ ଚଳିଣତ କରୁଥିବା ସବିତାର ଆହ୍ୱାନକୁ ସତେ ଯେପରି ଏହି ସବିତା ଶୁଣୁଛି । ତା ଓଠରୁ ଶବ୍ଦ ଖସି ପଡ଼ିଲା—

"ପରନ୍ତୁ ମୋତେ ତିରସ୍କୃତ କରିବା··· ··· ··· ।"

ଶବ୍ଦ ସେହିଠାରେ ଅଟକି ଗଲା । ହୃଦୟର ଗଭୀର ପ୍ରଦେଶରୁ ସେ ସବିତା ମୁହଁ ଭାଙ୍ଗିଲା ପରି ଜବାବ ଦେଲା—"ଦୟାର ଭିକ୍ଷା ମାଗୁଛୁ ? ହୀନମାନ୍ୟ ଶରଣାଗତା, ଆଧାରଶୂନ୍ୟ, ଅସହାୟା ସମ ହୋଇ ତୁ ବଞ୍ଚିବାକୁ ଚାହୁଁ ? ଅଞ୍ଜୁଳାଏ ପାଣିରେ ବୁଡ଼ି ମରି । ଫେରି କଥା କହୁ ସ୍ୱାଭିମାନର ।

ସବିତା ଭୟଗ୍ରାସିତ ହେଲା । ସତେ ଯେପରି ନିଜକୁ ଲୁଚାଇବା ପାଇଁ ଦୁଇ ହାତରେ ମୁହଁଟି ଘୋଡ଼ାଇ ରଖିଲା । ଗଳାରେ ଜମି ଯାଇଥିବା କୋହକୁ ଦବାଇ ରଖିବାକୁ ଚେଷ୍ଟା କରୁଥାଏ । କିନ୍ତୁ କୋହ ହଠାତ୍ ବାହାରକୁ ଉଛୁଳି ପଡ଼ିଲା । ସେ ମୋଟେ ଜାଣି ନାହିଁ । ହାତ ପାପୁଲି ଓଦା ହେଲା ପରେ ଜାଣି ପାରିଲା । ତାର ନୟନ-ଯୁଗଳ କ୍ରନ୍ଦନ କରୁଥାନ୍ତି । ହୃଦୟ ବ୍ୟାକୁଳ ହୋଇ ଉଠିଲା । ଜଣାଗଲା ବୁଦ୍ଧି ଯେପରି ଜଡ଼-ପଥର ପାଲଟି ଯାଇଛି । କିଛି ବୁଦ୍ଧି ଦେଖା ଯାଉ ନ ଥାଏ ।

ହଠାତ୍ ଯନ୍ତ୍ର-ସମ ନିଜ ଅଙ୍ଗୁଳିରେ ଅଶ୍ରୁ-ବିନ୍ଦୁ ପୋଛିଲା । ଅଙ୍ଗୁଳିର ଅଗ୍ରଭାଗରେ ଅଟକି ରହି ଯାଇଥିବା ଅଶ୍ରୁ-ବିନ୍ଦୁକୁ ବୁଢ଼ା ଅଙ୍ଗୁଠିରେ ଘଷି ଦେଲା । ଅଶ୍ରୁକୁ ସେ ସ୍ୱଚ୍ଛ ଆଖିରେ ଚାହିଁ ରହିଲା । ଗୋଟିଏ ଅଶ୍ରୁ-କଣା, ପରେ ପରେ ତ ଅଶ୍ରୁର ଅନନ୍ତ ଧାରା·········ଅଶ୍ରୁର ମଧ୍ୟ ସ୍ୱାଭିମାନ ନାହିଁ ?

ସବିତା ନିଜକୁ ନିଜେ ବୁଝାଇଲା । ନିଜ ହୃଦୟର ଗଭୀର ପ୍ରଦେଶରେ ହେଉଥିବା ଉଗ୍ର ଦ୍ୱନ୍ଦ୍ୱର ଦ୍ରଷ୍ଟା ସ୍ୱୟଂ ସେ ନିଜେ । କେହି ତାହାର କଥା ଶୁଣୁ ନ ଥାଆନ୍ତି । କାରଣ ସେ ନିଜେ ନିଃସହାୟ ହୋଇ ଯାଇଥିଲା, ସେ ନିଜେ ନିଜ ହୃଦୟର ସ୍ୱାମୀ ନୁହେଁ । ହୋଶ-ବେହୋଶ, ବିଚାର-ବିମର୍ଷ—ସମସ୍ତ ପଙ୍ଗୁ ହୋଇଗଲା । କାହାରି ହାବ ସଂଚାଳନ କଲେ ଯାଇ ଚାଲିବା କ୍ଷମତା ସୃଷ୍ଟି ହେଲା । ସେ ସ୍ୱୟଂ ନିଜେ

ଛିନ୍ନଭିନ୍ନ ହୋଇଗଲା, ବିଦୀର୍ଣ୍ଣ ହୋଇଗଲା, ଅଣୁରେ ପରିବର୍ତ୍ତିତ ହୋଇ ବିଶ୍ୱଆଡେ ବିଚ୍ଛେଦ ହୋଇଗଲା । ମୂଢ଼ତା ଜନିତ ନିଶା ଓହ୍ଲାଇ ଗଲା । ଉଠୁଥିବା ସେହି କ୍ଷତ········· ।

"ସ୍ୱୟଂ ବିକ୍ରମର ମା ହେଲି । ନିଜେ ଏହି ଘରଟି ନେଲି, ପୁଣି ମାଗି ନେଲା । ନଗଦ ଟଙ୍କା ଓ ହୀରା ଜବାହରାତ୍ ! ସୌଦା କଲୁ, ରେ ସ୍ତ୍ରୀ ତୁ ତ ସୌଦା କଲୁ । ନିଜେ ନିଜକୁ ବିକ୍ରୟ କରିଦେଲୁ । ବେଶ୍ୟା ବଜାରରେ ବସେ, ତୁ ଘରେ ବସି ରହିଲୁ, ଗୃହିଣୀ ହେଲୁ । ବାଃ ବାଃ କି ଛଳନା ! ପ୍ରତାରଣା ! କି ଦମ୍ଭ ! ପାପୀ ପେଟ ଯଦି ପୂରୁ ନାହିଁ ତାକୁ କାଟି ଦିଅ । ସେଥିରେ ପୁଣି ବଡ଼ମା ଯେ ଲୋକଙ୍କଠାରୁ ଦୟା ଭିକ୍ଷା କରିବା ପାଇଁ ବାହାରିଛୁ ! ନିର୍ଲଜ୍ଜ, ବେହିଆ, ବେସରମ ନାରୀ ! ପୁଳନକୁ ବଦନାମ କରି ······ ।"

ନା, ନା, ମୁଁ ତାହାର ବଦନାମ କରିବା ପାଇଁ ଭୁଲେହେଲେ ଚେଷ୍ଟା କରି ନାହିଁ । କାହାରି ଦୟାରେ ନିର୍ଭର ରହି ବଞ୍ଚିବାକୁ ମୁଁ ଆଦୌ ଚାହେଁ ନାହିଁ । ବର୍ତ୍ତମାନ ହାତ ଗୋଡ଼ ଚଳୁଛି, ଯଦି ନ ଚଳେ, ତେବେ ଜୀବନ ଲୀଳା ସମାପ୍ତ କରିବାରେ ଅବରୋଧକାରୀ ଅଛି କିଏ ?

ତାହେଲେ କ'ଣ ତୋର କୌଣସି ଅବରୋଧକାରୀର ଆବଶ୍ୟକତା ରହିଛି ? ନା, ନା ତୁ ଯେତେବେଳେ ଆତ୍ମହତ୍ୟା କରିବୁ, ସେତେବେଳକୁ ଅବରୋଧକାରୀର ଆବଶ୍ୟକତା ପଡ଼ିବ ।

ସବିତା······ !

ସବିତାର ଯେତେବେଳେ ଚେତନା ଫେରିଲା ସେତେବେଳକୁ ସେ ନିଜର ଷ୍ଟେଟ ବାକ୍‌ସଟି ପୂର୍ତ୍ତି କରୁଥାଏ । ସମସ୍ତ ଗହଣା ଏହି ବାକ୍‌ସରେ ରଖି ଦେଇଥିଲା । ବେଙ୍କର ନୂତନ ଚେକ ବହିର ପ୍ରଥମ ପୃଷ୍ଠାରେ ସହି ମଧ କରି ରଖି ଦେଇଥାଏ ।

କେବଳ ପିନ୍ଧାଲୁଗାରେ ସିଏଁ ରହିଲା । ସେ ଘରଟିରେ କୋଲପ ପକାଇଲା । ଘରର ଚାବି ମଧ ସେହି ବାକ୍‌ସରେ ରଖି ବାକ୍‌ସଟିକୁ ଧରି ସେ ଘରକୁ ଗଲା ।·········ଏ ଘର ଓ ସ୍ୱୟଂ ନିଜକୁ ତୁଚ୍ଛ ତଥା ବ୍ୟବସାୟୀ ବୋଲାଉଥିବା ସୌଦାର ମୂଲ୍ୟ ଫେରସ୍ତ କରିବା ପାଇଁ । ସେ ପାହାଚ ଓହ୍ଲାଇ ରାସ୍ତା ଉପରକୁ ବାହାରି ପଡ଼ିଲା········· ।

* * *

# ମୋ ମା

ଶ୍ରୀ ରମଣଲାଲ ବସନ୍ତଲାଲ ଦେଶାଈ

ଠିକ କୁସୁମାୟୁଧ ଆଜ ବେଶ ଆନନ୍ଦ ଅନୁଭବ କରୁଥାଏ, କିନ୍ତୁ ମନରେ ବ୍ୟଗ୍ରତା ମଧ୍ୟ କମ ନ ଥାଏ । ସୁନ୍ଦର ସୁନ୍ଦର ବସ୍ତ୍ର-ସୁସଜ୍ଜିତ, ମୃଦୁହାସମୟୀ ଗୋଟିଏ ଯୁବତୀ ଆଜ ଗୃହରେ ବିଚରଣ କରୁଛି । ମନକୁ ମଧ୍ୟ ଭାରି ଭଲ ଲାଗୁଥାଏ । କୁସୁମାୟୁଧ ମାତା-ପିତାଙ୍କର ଏଡ଼େ ଅଳଅଳ ପୁଅ ଯେ ସେମାନେ ନାମଟି ଅଳ୍ପ ଲମ୍ବା ହେଲେ ମଧ୍ୟ ଏହାକୁ ବିଶେଷ ଭାବ ଦେଇ ଥିଲେ । କିନ୍ତୁ ମା ପୁଅକୁ ଆଦରର ସହ ଲାଳନ ପାଳନ କରିବା ପାଇଁ ବେଶୀ ଦିନ ରହିଲା ନାହିଁ । ସେ ଗୃହ ବର୍ଷର ପୁଅକୁ ଛାଡ଼ି ସେ ପୁରକୁ ଗଲା । ତା ପରେ ଦୁଇ ବର୍ଷ ବିତିଗଲା କିନ୍ତୁ ମା ଆଜ ଫେରିଲା ନାହିଁ ।

"ମା ଗଲା କୁଆଡ଼େ ?"—କୁସୁମାୟୁଧ ମନରେ ସର୍ବଦା ଏହି ପ୍ରଶ୍ନ ଉଠୁଥାଏ ।

କିଏ କହେ—"ସେ ପ୍ରଭୁଙ୍କ ଘରକୁ ଯାଇଛି ।" କିଏ କହେ—"ମାମୁ ଘରକୁ ଯାଇଛି ।" କିଏ କହୁଛି "ସେ ବୁଲିବାକୁ ଯାଇଛି ।" କିନ୍ତୁ ଚାକର କହେ "ସେ ତ ମରିଗଲା ।"

"କିନ୍ତୁ ସେ ମୋତେ ନ ନେଇ ଗଲା କାହିଁକି ?" କୁସୁମାୟୁଧର ଏହି ଅଶ୍ରୁପୂର୍ଣ୍ଣ ବିନତି ସମସ୍ତଙ୍କ ଆଖି ଓଦା କରିଦିଏ । ବର୍ଷେ ପର୍ଯ୍ୟନ୍ତ ବାଳକ ଏହିପରି ଅଭିଯୋଗ କରୁଥାଏ । ଶେଷରେ ଶ୍ରାନ୍ତହୋଇ ବାଳକଟି ପ୍ରଶ୍ନର ସ୍ୱରୂପ ବଦଳାଇ ଦେଲା—"ମା ଫେରିବ ତ ?"

ପ୍ରଶ୍ନ ଶୁଣି ସମସ୍ତେ ତା ମୁହଁକୁ ଦେଖନ୍ତି, କଏ ନିଜ ଆଖିରେ ଲୁଗା ଘୋଡ଼ାଇ ନିଏ, କଏ ଥରିଗଲାରେ କହେ —"ହଁ,ହଁ, ସେ ଆସିବ, ବାପ ! ଯା ଖେଳିବୁ ।"

ଏତିକେ ସାମାନ୍ୟ ଉତ୍ତର ବାଳକର ପ୍ରତ୍ୟେକ ଅଙ୍ଗରେ ଉତ୍ତେଜନା ଆଣି ଦିଏ । ସେ ଦୌଡ଼ି ଦୌଡ଼ି, ହସି ହସି ଖେଳେ । କିନ୍ତୁ ଚାରି ପାଞ୍ଚ ଦିନ ପରେ ପୁଣି ସେହି ପ୍ରଶ୍ନ ପଚାରେ । ଶେଷରେ ସେ ପ୍ରଶ୍ନ ପଚାରିବା କମେଇ ଦେଲା । ଧୀରେ ଧୀରେ ତା ମନରେ ଧାରଣା ହେଲା ଯେ ଅଡ଼ଶୀ ପଡ଼ଶୀ ସମସ୍ତେ ମିଶି ତାଙ୍କୁ ମା'ଠାରୁ ଛଡ଼େଇ ନେଲେ । ସେଥିପାଇଁ ସେ ଏକା ଖେଳିଲା । କେବଳ ରାତିରେ ଶୋଇବା ସମୟରେ ବଲବଲାଏ— ମା···ମା ।'

ଡାକଶୁଣି ବାପା ଚହ୍ଙ୍କି ଉଠନ୍ତି ଓ ତା ଦେହକୁ ଆଉଁଷି ଦିଅନ୍ତି ।

ହଠାତ୍ ଦିନେ ସେ ଘରେ ସୁନ୍ଦରୀ ସ୍ତ୍ରୀଟିଏ ଦେଖିଲା । କୌଣସି ରୂପବତୀ ଯୁବତୀଙ୍କଠାରେ ସେ ନିଜ ମା'ର ସ୍ୱରୂପ ଦେଖିବାକୁ ଚେଷ୍ଟା କରୁଥାଏ । ମା ପରି ଲୁଗା ପିନ୍ଧିଥିବା ଯେ କୌଣସି ସ୍ତ୍ରୀ କୁ ଦେଖିଲେ, ଅପଲକ ଚାହିଁ ରହେ । ଏହିପରି କୌଣସି ସ୍ତ୍ରୀ ଯଦି ସାକ୍ଷାତ କରିବାକୁ ଆସେ, ତେବେ ସେ ତାକୁ ଘରେ ରହିବା ପାଇଁ ଆଗ୍ରହର ସହ ଅନୁରୋଧ କରେ । ମା'ର ମମତାଭରା ଚାହାଣି ଟିକିଏ ପାଇବା ପାଇଁ ବ୍ୟାକୁଳ ହେଉଥିବା ବାଳକ ସ୍ୱବୁଦ୍ଧି ଅନୁଯାୟୀ ମା'କୁ ଏହିଭଳି ଖୋଜି ବୁଲୁଥାଏ ।

ଅନ୍ୟ ସ୍ତ୍ରୀମାନେ ତ ଆସି ଚାଲି ଯାଆନ୍ତି । କାଳେ ଏହି ସ୍ତ୍ରୀ ମଧ୍ୟ ସେମାନଙ୍କ ପରି ଚାଲିଯିବ —ଏହି ଧାରଣା ତାକୁ ବ୍ୟାକୁଳ କରି ପକାଇଲା । ସମସ୍ତଙ୍କ ପରି ସେହି ଯୁବତୀଟି ମଧ୍ୟ ତାକୁ ନିଜ ପାଖକୁ ଡାକିଲା । ସେ ନିଜ ଆସବାବରୁ ଦୁଇ ତିନୋଟି ବାକ୍ସ ଶୋଇବା ଘରେ ରଖାଇଲା, ତେଣୁ ବାଳକ ଜାଣିପାରିଲା ଯେ ଏହି ସ୍ତ୍ରୀଟି ଶୀଘ୍ର ଯିବନାହିଁ । ତେବେ ମଧ୍ୟ ନିଶ୍ଚିତ କଥା ଜାଣିବା ପାଇଁ ସେ କହିଲା—"ତୁମେ ଏଠି ରହିବ ନା ଚାଲିଯିବ ?"

ଯୁବତୀ ହସି ଉଠିଲା । ସେ ମଧ୍ୟ ଓଲଟା ପ୍ରଶ୍ନ ପଚାରିଲା— "ଆପଣଙ୍କୁ କେଉଁଟା ଭଲ ଲାଗିବ ? ମୁଁ ରହିଲେ ନା ଚାଲିଗଲେ ?"

"ଏଇଠି ରହିଲେ ଭଲ ଲାଗିବ ।" କୁସୁମାୟୁଧ ଉତ୍ତର ଦେଲା । ସ୍ତ୍ରୀ ଟି ତାକୁ 'ଆପଣ' ବୋଲି ସମ୍ବୋଧନ କ ଉଦ୍ଦେଶ୍ୟରେ କରୁଛି ବେଚରା କିଛି ବୁଝିପାରିଲା ନାହିଁ ।

ସ୍ତ୍ରୀଟି କୁସୁମାୟୁଧକୁ ଗୁଡ଼ାଏ ଖେଳନା ଦେଲା, ସୁନ୍ଦର ସୁନ୍ଦର ବସ୍ତ୍ର ପିନ୍ଧାଇଲା, ମୁଣ୍ଡ କୁଣ୍ଡାଇ ସାଥିରେ ଖାଇବାକୁ ବସାଇଲା । ବାଳକଟିକୁ ଆଶ୍ଚର୍ଯ୍ୟ ଲାଗୁ ଥାଏ । ଏହି ସ୍ତ୍ରୀ କିଏ ? କାହିଁକି ଆସିଛି ? କୁସୁମାୟୁଧ ବରାବର ତା ଚତୁର୍ଦ୍ଦିଗରେ ବୁଲୁ ଥାଏ ।

ତାକୁ ଜଣାଗଲା ସତରେ ଯେପରି ତା ପରି ବାପାଙ୍କୁ ମଧ୍ୟ ସ୍ତ୍ରୀଟି ଖୁବ ଭଲ ଲାଗିଛି । କିନ୍ତୁ ସେ ବାପାଙ୍କ ସହିତ ଧୀରେ ଧୀରେ କଥା କାହିଁକି ହେଉଛି ? ଚେୟାର ଗୃହାଣୀରେ ଗୃହୁଁଛି କାହିଁକି ? ମୁରୁକି ହସୁଛି କାହିଁକି ? ଯଦି ସ୍ତ୍ରୀଟି ଘରେ ରହେ ସତେ ଭାରି ମଜା ଲାଗିବ । ମା ମଧ୍ୟ ଏପରି ଶାନ୍ତିରେ ଘରେ ରହୁଥିଲା ।

କୁସୁମାୟୁଧ ନିଜକୁ ଆଉ ସମ୍ଭାଳି ପାରିଲା ନାହିଁ । ଶୋଇବା ପୂର୍ବରୁ ଦୌଡ଼ି ଯାଇ ଯୁବତୀକୁ ପଚାରିଲା—

"ତୁମେ ମୋ ସମ୍ପର୍କୀୟ ?

"ହଁ"

"କିପରି ?"

ଯୁବତୀ ହଠାତ କିଛି କହି ପାରିଲା ନାହିଁ । ତା ଦୃଷ୍ଟି ସ୍ଥିର ହୋଇ ଗଲା । କଅଣ ବାଳକଟି ନିଜ ସମ୍ପର୍କ ବୁଝି ପାରିବ ? ପୁଣି ତତ୍‌କ୍ଷଣାତ ସ୍ଥିର ହୋଇ କହିଲା —"ମୁଁ ତୁମର ମାଁ ହେବି ।"

"ମାଁ ?"

କୁସୁମାୟୁଧର ହୃଦୟରେ ଅନେକ ବିଚାର-ତରଙ୍ଗ ଉଠିଲା "ମା ସମ୍ପର୍କ ଶୁଣିବା ମାତ୍ରେ ଭାବିଲା ଦୌଡ଼ି ତା ଗଳାରେ ଓହଳି ପଡ଼ିବ; ତାକୁ କୁଣ୍ଢେଇ ଧରିବ । କିନ୍ତୁ ଜାଣେ ନା କାହିଁକି ଏପରି କିଛି ଚେଷ୍ଟା ସେ କରି ପାରିଲା ନାହିଁ । କିନ୍ତୁ ସେ ସେହି ସ୍ତ୍ରୀର ହାତ ଧରି ପକାଇଲା ଓ ଦୁଇ ହାତରେ ଚପିଲା । ମା ଡ଼ାକ ଶୁଣିବା ଇଚ୍ଛା ପୋଷଣ କରଥିବା ସ୍ତ୍ରୀଟି ଅଳ୍ପ ହସିଲା । କିନ୍ତୁ କେବଳ ହସିବା କ'ଣ ଯଥେଷ୍ଟ ? ସେ ମୋତେ କାହିଁକି କୋଳରେ ଧରି ଗେଲ କରୁ ନାହିଁ ? କୁସୁମାୟୁଧ ସଶଙ୍କିତ ପଚାରିଲା—

"ତୁମେ କଅଣ ମୋ ନିଜ ମା ?"

ପିଲାଙ୍କ ବୁଦ୍ଧି ବୟସ୍କଙ୍କ ପାଇଁ କସଟି-ପଥର ସ୍ୱରୂପ । ବିବାହ କରି ଆସିବା ପ୍ରଥମ ଦିନ ଜଣେ ବାଳକ ଏହି ଯୁବତୀର କଠିନ ପରୀକ୍ଷା ନେଉଥାଏ । ସେ ପୂର୍ବରୁ ଜାଣିଥିଲା ଯେ ତାକୁ ଗୋଟିଏ ବାଳକର ଲାଳନ ପାଳନ କରିବାକୁ ହେବ । ଏକଥା ଜାଣି ବିବାହ ସମ୍ପନ୍ନ ହେଲା । ନିଜ ମା ପାଇଁ ଶିଶୁ-ପାଳନ ଗୋଟିଏ ବିକଟ ସମସ୍ୟା, ତେବେ ସାବତ ମା ପାଇଁ ତାହା କେତେ ବିକଟ ହୋଇ ଥାଏ—ଏ ବିଷୟରେ ଯୁବତୀଟିର କୌଣସି ଧାରଣା ନଥିଲା । କିନ୍ତୁ ସେ ଉତ୍ତର ଦେଲା—"ହଁ ବାପ, ମୁଁ ତୋର ନିଜ ମା ।"

"ତା ହେଲେ ତୁମେ ମୋତେ "ତୁ" କାହିଁକି କହୁନାହଁ ?"

"ଏଥର କହିବି ।"

"ଆଚ୍ଛା, ମୁଁ ତୁମକୁ କଅଣ ଡ଼ାକିବି ?"

"ଦିଦି, କହିବୁ ।"

ମା କିମ୍ବା ବୋଉ ଶବ୍ଦୋଚ୍ଚାରଣ ଶୁଣିବା ପାଇଁ ଯୁବତୀଟି ବର୍ତ୍ତମାନ ପ୍ରସ୍ତୁତ ନ ଥିଲା । ପତ୍ନୀ ସ୍ୱଭାବରେ ନିଜର ଅନେକ ସଂଚିତ ଅଭିଳାଷ ପୂର୍ତ୍ତି କରିବାର କାମନା ଯୋଗୁ "ମା" କିମ୍ବା "ବୋଉ" ଡାକ ତାକୁ ବୃଦ୍ଧାବସ୍ଥାକୁ ଠେଲିଲା ପରି ଜଣାଗଲା ।

ବାଳକ ହତାଶ ହେଲା । ସେ ତାର ନିଜ ମା ନୁହେଁ । ଦୀର୍ଘନିଶ୍ୱାସ ଛାଡ଼ି ସେ ଶୋଇ ପଡ଼ିଲା ।

( ୨ )

ଦ୍ୱିତୀୟ ଥର ବିବାହ କରିଥିବା ପୁରୁଷଙ୍କ ସହ ଲୋକେ ଥଟ୍ଟା କରନ୍ତି, ବାକ୍ୟ-ବାଣ ନିକ୍ଷେପ କରନ୍ତି ଏବଂ ତାହାର ସାମାନ୍ୟ ତିରସ୍କାର ମଧ୍ୟ କରିଥାନ୍ତି । ପ୍ରାୟ ସ୍ତ୍ରୀଙ୍କର ତଥା ପତ୍ନୀ ସୁଖ ଭୋଗୀ ପୁରୁଷଙ୍କର ଏପରି ପ୍ରବୃତ୍ତି ହୋଇ ଥାଏ । ସ୍ତ୍ରୀଙ୍କର ଏହି ପ୍ରବୃତ୍ତି ସକାରଣ ଓ ଯୁକ୍ତି-ଯୁକ୍ତ । ସଂସାର ସୁଖ ବିନା ସ୍ତ୍ରୀଙ୍କର କାମ ଚଳିବ, ସେମାନଙ୍କୁ ସେହି ସୁଖ ବିନା ଚଳେଇବାକୁ ହେବ —ଏହି ରୀତି ପ୍ରବର୍ତ୍ତକ ପୁରୁଷ ଯଦି ସଂସାର ସୁଖ ବିନା କ୍ଷଣମାତ୍ର ଚଳିବାକୁ ଅସମର୍ଥ ହୁଏ ତେବେ ସେମାନେ ନିଶ୍ଚୟ ସ୍ତ୍ରୀ ଜାତିଙ୍କ ଦ୍ୱାରା ତିରସ୍କାର ପ୍ରାପ୍ତ କରିବା ଯୋଗ୍ୟ ଅଟନ୍ତି । କିନ୍ତୁ ଯଦି ପତ୍ନୀ ସହ ସାଂସାରିକ ସୁଖ ଉପଭୋଗ କରୁଥିବା ପୁରୁଷ ଏହି

ତିରସ୍କାର-ବୃତ୍ତିରେ ସହଯୋଗ କରେ, ତେବେ ଏହା ଦୃଢ଼ତାର ସହ କୁହାଯାଇ ପାରେ ଯେ ସେମାନେ ଏହାର ଅଧିକାଂଶ ନୁହନ୍ତି ।

ଯେତେବେଳେ କୁସୁମାୟୁଧର ବାପା ପୁନର୍ବିବାହ କରିବାକୁ ନିଶ୍ଚିନ୍ତ କଲେ ସେତେବେଳେ ପୁରୁଷର ଏହି ଅଧିକାର ତତ୍‌କ୍ଷଣାତ ସ୍ୱୀକାର୍ଯ୍ୟ ହେଲା ଓ ବିବାହ ସମ୍ପନ୍ନ ହେଲା । ପୁରୁଷଟି ଅତି ବୁଦ୍ଧିମାନ, ବିବାହ ପାଇଁ ରାଜି ହୋଇଥିବା ଯୁବତୀଟିକୁ ସେ ସରଳ କହିଦେଲା ଯେ ପ୍ରଥମ ପତ୍ନୀର ଗୋଟିଏ ପୁତ୍ର ଅଛି । ତାକୁ ନିଜ ପୁତ୍ର ସମ ପାଳନ କରିବାକୁ ହେବ । ଯୁବତୀଟି ଏ କଥାକୁ ସ୍ୱୀକାର କଲା—ଏକ ରକମ ଉତ୍ସାହର ସହ ସ୍ୱୀକାର କଲା ଓ ଘରକୁ ଆସି ସ୍ନେହମୟୀ ମାତାଙ୍କ ସ୍ନେହ-ମମତାରୁ ବଞ୍ଚିତ ଚୁନି କୁସୁମାୟୁଧକୁ ନିଜ ପୁତ୍ର ସମ ପାଳନ କରିବା ପାଇଁ ପ୍ରକୃତରେ ଚେଷ୍ଟା କରିବାକୁ ଲାଗିଲା ।

"କୁସୁମାୟୁଧ ଏଥର ଉଠିବ ନା ? ସାତଟା ବାଜିଗଲାଣି ।" ସେ ଅତି ଧୀରେ ବାଳକକୁ ଉଠାଏ ।

"ଏଥର ମୁଣ୍ଡରେ ତେଲ ଲଗାଇବା ଦରକାର ।" ବାଳକ ତା ପାଖରେ ବସି ମୁଣ୍ଡ କୁଣ୍ଡାଇ ନିଏ । "ଏଥର ଗାଧୋଇବ ଯାଅ ।" କୁସୁମାୟୁଧ ଗାଧୋଇ ପଡ଼େ ।

"ବାପ, ଏଥର ଉଠି ପଡ଼, ଦୁଇଟାରୁ ଅଧିକ ରୁଟି ଖାଇବା ଠିକ୍ ନୁହେଁ ।" ମାଆଙ୍କ ଆଜ୍ଞା ପାଳନ କରି ବାଳକ ଉଠି ଠିଆ ହୋଇ ଯାଏ ।

"ବାପ, ବେଶୀ ଦୌଡ଼ିବୁ ନାହିଁ ।" ଆଜ୍ଞା ପାଇବା ମାତ୍ରେ ବାଳକର ଗୋଡ଼ ଆପେ ଆପେ ଅଟକି ଯାଏ ।

"ଚିତ୍କାର କରି କହିବା ଉଚିତ ନୁହେଁ" ବାଳକର ପ୍ରତ୍ୟେକ ଅଙ୍ଗରେ ସ୍ଫୁରିତ ହୋଇଥିବା ଉତ୍ସାହ ମାନ୍ଦା ପଡ଼ିଯାଏ ।

ବାଳକଟିର ଲାଳନ ପାଳନ ବ୍ୟବସ୍ଥିତ ରୂପେ ସଂଚାଳନ କରିବା ପାଇଁ ସାବତ ମାର ତୀବ୍ର ପ୍ରବୃତ୍ତି ସର୍ବଦା ଜାଗରୁକ ରହିଥାଏ । ବାଳକ ସୁଖି ରହୁ ତଥା ଭଲ ରହୁ, ଏଥିପାଇଁ ପ୍ରାଣପଣେ ଚେଷ୍ଟା କରେ ।

ପ୍ରକୃତରେ ବାଳକ ଉତ୍ତମ ସ୍ୱଭାବ ସମ୍ପନ୍ନ ଓ ଆଜ୍ଞାକାରୀ ହେଲା, କିନ୍ତୁ ତା ମନରେ ଶଙ୍କା ହେଉଥାଏ—'ମା କଅଣ ଏପରି ହୋଇପାରେ ?'

ଆକାଶରେ ମୁକ୍ତ ହୋଇ ଉଡ଼ୁଥିବା ଓ କଲ୍ଲୋଳ କରୁଥିବା ପକ୍ଷୀକୁ ଯଦି ହଠାତ୍ ଆଜ୍ଞାକାରୀ ବିମାନରେ ପରିଣତ କରିଦିଆ ଯାଏ ତେବେ ପକ୍ଷୀ ଯାହା ଅନୁଭବ କରିବ, ବର୍ତ୍ତମାନ କୁସୁମାୟୁଧ ଠିକ୍ ତାହାହିଁ ଅନୁଭବ କଲା । ପୋଷାକ ପରି ସ୍ୱଚ୍ଛ ରହିଲା, ତାର ଗତିରେ ସ୍ଥିରତା ଆସିଗଲା । ବ୍ୟସ୍ତ କରିଦେବା ଭଳି ପ୍ରଶ୍ନ ପରମ୍ପରା ବଦଳରେ ବର୍ତ୍ତମାନ ତା ଠାରେ ଚତୁର୍ଦ୍ଦିଗପୂର୍ଣ୍ଣ ଶାନ୍ତିର ଅନୁଭୂତି ଦେଖିବାକୁ ମିଳିଲା । ଦିନସାରା ଚୁପ ନ ବସି ଦୁଷ୍ଟାମି କରୁଥିବା ବାଳକଠାରେ ସ୍କୁଲଯିବା ପ୍ରତି ତତ୍ପରତା ଦେଖାଦେଲା ।

କେବଳ ତା ଶରୀର କ୍ଷୀଣହୋଇଗଲା । ସାବତ ମା ହୃଦୟରେ ଚିନ୍ତା ଖେଳିଗଲା । "କୁସୁମାୟୁଧ ଶୁଖି କଣ୍ଟା ହୋଇଗଲାଣି । ତାକୁ ଡ଼ାକ୍ତରଙ୍କୁ ଦେଖାଅ ନା ?"

ପିତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା ଯେ ମା ତା କର୍ତ୍ତବ୍ୟ ପୂରାପୂରି ପାଳନ କରୁଛି । ସେ ଭଲ ଡାକ୍ତରଙ୍କୁ ଡାକଲେ । ଡ଼ାକ୍ତର କୁସୁମାୟୁଧର ପରୀକ୍ଷା କରି କହିଲେ—"କିଛି ଖାସ ରୋଗ ନାହିଁ । କଡ଼ଲିଭର ଅଏଲ ଖୁଆନ୍ତୁ ।"

ମା ଅତ୍ୟନ୍ତ ଯତ୍ନର ସହ କଡ଼ଲିଭରଅଏଲ ପିଆଇବା ଆରମ୍ଭକଲା ବାଳକ ଭାବେ ଯେ ଏହି ଖରାପ ଔଷଧ ଖାଇବାଠାରୁ ବେମାର ରହିବା ଶତ ଗୁଣ ଭଲ । ତେବେ ନୂଆ ମାର ଶିକ୍ଷା ଓ ଆଗ୍ରହ ନିକଟରେ ସେ ନିଜ ମନକୁ ଦବେଇ ଦିଏ ।

ମା କୁହେ—"ଏଇ ଅଳ୍ପ ଔଷଧ ପିଇନେ, ପରେ ଖେଳିବାକୁ ଯିବୁ ।"

"ଦିଦି, ମୋତେ ଏ ଔଷଧ ଭଲ ଲାଗୁ ନାହିଁ ।"

"ଭଲ ନ ଲାଗିଲେ ମଧ୍ୟ ପିଇବାକୁ ହେବ ।"

"କାହିଁକି ?"

"ଡାକ୍ତର କହି ଯାଇଛନ୍ତି ।"

"ତାଙ୍କ ଆଜ୍ଞା ପାଳନ କରିବାକୁ ହେବ ?"

"ହଁ ।"

"କଅଣ ସମସ୍ତଙ୍କ ଆଜ୍ଞା ପାଳନ କରିବାକୁ ହେବ ?"

"ବଡ଼ମାନଙ୍କ ଆଜ୍ଞାନୁଯାୟୀ ଶ୍ରେଷ୍ଠଙ୍କୁ ଚଳିବାକୁ ହୁଏ ।"

"ନ ମାନିଲେ ?"

"ରୋଗରେ ପଡ଼ିବାକୁ ହେବ ।"

"ମୁଁ କଅଣ ବେମାର ଅଛି ?"

"ହଁ, ଅଳ୍ପ ।"

"ଔଷଧ ଯଦି ନ ପିଏ ?"

"ତେବେ ମୃତ୍ୟୁ ହୋଇ ପାରେ ।"

ସାବତ ମା ବାଳକକୁ ଭୟ ଦେଖାଇଲା । ସେ ବାଳକକୁ କେବେ ହେଲେ ଧମକାଏ ନାହିଁ । ସେ ଶିଶୁ-ପାଳନର ଅନେକ ବିଷୟ ଅଧ୍ୟୟନ କରିଛି । ତେଣୁ ଧମକାଇବା ପରିବର୍ତ୍ତେ ତର୍କ ବିତର୍କ କରି ବାଳକକୁ ନିରୁତ୍ତର କରିଦିଏ । ପରେ ନିଜ ଇଚ୍ଛାନୁସାରେ କାମ କରେଇ ନିଏ । ଏହିପରି ଘର୍ଷ ତର୍କ ବିତର୍କ ପ୍ରାୟ ହୁଏ ନ କହିଲେ ଚଳେ । ଯଦି କେତେବେଳେ ହୋଇଥାଏ ତେବେ ସେ ବାଳକକୁ ଶାରୀରିକ କ୍ଷତିରେ ବୁଝାଇ ସନ୍ତୋଷ ଲାଭ କରେ ! କିନ୍ତୁ ବାଳକ ଏହାର ଅର୍ଥ ଭିନ୍ନ ରୂପେ ଗ୍ରହଣ କରୁଥାଏ ।

ଶାନ୍ତରେ କାଡ଼ଲିଭର ପାନ କରୁଥିବା ବାଳକ ହୃଦୟରେ ପ୍ରଶ୍ନ ଉଠିଲା—"ମୃତ୍ୟୁ ଆସିଲେ କ୍ଷତି କଅଣ ?"

କେହି ଜଣେ କହୁଥିଲା-ମା ମରିଯାଇଛି—ନିଜ ମା ବିଷୟରେ ଭୁଲି ଯାଇଥିବା କୁହେଳିକା ଆଚ୍ଛାଦିତ ସ୍ମରଣ ନୂତନ ଭାବରେ ଜାଗି ଉଠିଲା ।

"ମୁଁ ଯଦି ମରିଯାଏ ତେବେ ମା ସହ ମୋର ସାକ୍ଷାତ ହୋଇ-ଯିବ, ନା ?" ସେ ହୃଦୟର ସହ ତର୍କ ବିତର୍କ କଲା ଏବଂ ଏହି ତର୍କ ଯଥାର୍ଥ ଜଣା ଗଲା ।

କାଉଡ଼ଲଭର ତଥା ଉତ୍ତମ ପରଚର୍ଯ୍ୟା ହେଲେ ମଧ୍ୟ ପ୍ରକୃତରେ କୁସୁମାୟୁଧ ରୋଗୀ ହୋଇଗଲା ।

( ୩ )

"ଧନ ତୁମର କଅଣ ହେଲା ?" ପ୍ରତିଦିନର ନିୟମାନୁସାରେ ବାଳକଟି ଯେତେବେଳେ ଗାଧୋଇ ଖାଇବାକୁ ଆସିଲା, ସେତେବେଳେ ମା ପଚାରିଲେ ।

"କିଛି ନାହିଁ ବୋଉ ।" କୁସୁମାୟୁଧ ଜବାବ ଦେଲା ।

"ଆରେ; ତୁମ ଆଖି ତ ଲାଲ ପଡ଼ିଗଲାଣି ।"

"ମୋତେ ଜଣା ନାହିଁ ।"

"ଆରେ ଦେହର ରୋମ ଟାଙ୍କୁର ଉଠିଲାଣି !

"ଟିକିଏ ଶୀତ ଜଣା ଯାଉଛି ।"

"ତା ହେଲେ ତୁମେ ଗାଧୋଇଲ କାହିଁକି ?

"ନ ଗାଧୋଇଲେ ଖାଆନ୍ତି କେମିତି ? ନ ଖାଇଲେ ସ୍କୁଲକୁ ବା ଯାନ୍ତି କପରି ? କୁସୁମାୟୁଧ ଜୀବନ ଠେନର ଗୋଟିଏ ସରୋଇ-ନିୟମର ପ୍ରମାଣ ଦେଖାଇଲା । କିନ୍ତୁ ଏ କଥା କହୁ କହୁ ବାଳକ ଜୋରରେ ଥରିବାକୁ ଲାଗିଲା । ମା ଦେଖିଲା— କୁସୁମାୟୁଧର ଦାନ୍ତ କଡ଼ କଡ଼ ହେଲାଣି । ସେ ଖୁବ ଜୋରରେ ଡାକିଲା—" ଆଲୋ ଦେଖିଲୁ, ପିଲାକୁ ଜ୍ୱର ହୋଇ ନ ତ ?

ଗୃହଗଣୀ ପାଖକୁ ଆସି ବାଳକ ଦେହରେ ହାତ ଦେଇ କହିଲା—"ମାଲୋ ଭୟଙ୍କର ଜ୍ୱର ! "

"ହଠାତ ଏମିତି କପରି ହେଲା ?"

"ମୁଁ ଯେତେବେଳେ ଗାଧୁଆଉଥିଲି ସେତେବେଳେ ମଧ୍ୟ ଦେହ କିଛି ଖରାପ ଜଣାଯାଉଥିଲା ।"

"ତେବେ ତୁ କାହିଁକି ଗାଧୋଇ ଦେଲୁ ?"

"ମୁଁ ଭାବିଲି ଏମିତି ଗରମ ହୋଇଥିବ ।"

"ଯା ଶେଜ ପାରି ପିଲାକୁ ଶୁଆଇ ଦେବୁ । ଭଲ ଭାବରେ ଘୋଡ଼ାଇ ଦେବୁ । ମୁଁ ଯାଉଛି ଡ଼ାକ୍ତର ଡ଼ାକି ଆଣିବ ।"

"କିନ୍ତୁ ବାବା ! ମୁଁ ସ୍କୁଲକୁ ଯିବି କିପରି ? ଗୃହିଣୀ କୋଳକୁ ଟାଣିଆଣିଲା ବେଳେ କୁସୁମାୟୁଧ କହିଲା ।

ନିସ୍ତେଜ ପ୍ରାୟ ବାଳକର ଲଗ୍ନ ଦେଖି ମାର ହୃଦୟରେ କରୁଣ ଧାର ପ୍ରବାହିତ ହେଲା । ସେ କହିଲା—ସ୍କୁଲ ଯମପୁରକୁ ଯାଉ, ଏତେ ଜ୍ୱରରେ କିଏ ସ୍କୁଲକୁ ଯାଏ ? ଯାଅ ଶୋଇ ପଡ଼, ହଁ ବାପ, ମୁଁ ବର୍ତ୍ତମାନ ଆସୁଛି ।"

ଗୃହିଣୀ ବାଳକଟିକୁ କାଖେଇ ନେଇ ଗଲା । ମା ବଡ଼ବଡ଼େଇଲା "ଗୃହର ଗୃହର ହିଁ ରହି ଥାଏ । ଏମାନଙ୍କର ଚିନ୍ତା କଅଣ, ଯଦି ଦେହ ଗରମ ଥିଲା ତେବେ ଗାଧୋଇଲା କାହିଁକି ? ମାଇ ଗୃହରଙ୍କର କଅଣ ଗଲା ?"

ଅଳ୍ପ କ୍ଷଣ ପରେ ଡ଼ାକ୍ତର ଭାଉତି ଆସି ପହଞ୍ଚିଲେ । କିଛି କ୍ଷଣ ପାଇଁ ଗୃହିଣୀଟିକୁ ଡାକି ସାବତ ମା ବାଳକ ନିକଟରେ ବସିଲା । ବାଳକକୁ ଜ୍ୱର କେତେବେଳେ ହେଲା, କାହିଁକି ହେଲା, କିପରି ହେଲା —ଆଦି ସମସ୍ତ କଥା ଡ଼ାକ୍ତରକୁ କହିଲା । ବାଳକ ଶୋଇବା ପାଇଁ ଚେଷ୍ଟା କରୁଥାଏ । ପଲଙ୍କ ଉପରେ ଡ଼ାକ୍ତର ଆଖି ପରୀକ୍ଷା କଲେ । କାଖରେ ଥର୍ମୋମିଟର ଲଗାଇଲେ, ବାଳକଟିକୁ ପ୍ରଥମ ସିଧା ଶୁଆଇଲେ ପରେ ମୁହଁ ମାଡ଼ି ଶୁଆଇଲେ । ତା ଛାତି, ପେଟ ଦେଖିଲେ ତଥା ମେରୁଦଣ୍ଡଟିକୁ ଆଙ୍ଗୁଠିରେ ଠକ୍‌ଠକ୍ କରି ମାରିଲେ । ତାକୁ ଓଲଟେଇପାଲଟେଇ ଭଲରୂପେ ଦେଖିବା ପରେ ଡ଼ାକ୍ତର ଔଷଧ ଲେଖିଦେଲେ ଓ ଆବଶ୍ୟକ ପଡ଼ିଲେ ଫେର ଡ଼ାକିବାକୁ କହି ଚାଲିଗଲେ ।

ବାଳକ ପୁଣି ବ୍ୟତିବ୍ୟସ୍ତ ହେଲା ଛଟିପିଟି ହେଲା । ମା ଡ଼ାକ୍ତରଙ୍କୁ ଫେର ଡ଼ାକିଲେ । ବାଳକର ପିତାଙ୍କୁ ମଧ୍ୟ ଅଫିସରୁ ଡ଼କାଗଲା । ପତିପତ୍ନୀ ଦୁହେଁ ବାଳକ ନିକଟରେ ବସି ରହିଲେ । ମା' ରାତିରେ ଖାଇଲା ନାହିଁ ।

ବାଳକ ମୁଣ୍ଡରେ ବରଫ ରଖିବା ପାଇଁ ଡାକ୍ତର ଆଦେଶ ଦେଇଗଲେ । ଡାକ୍ତରମାନେ ଆଦେଶ ଦେଲାବେଳେ ବୋଧହୁଏ ଭାବନ୍ତି ନାହିଁ ଯେ ସେ ଯେଉଁ ଆଦେଶ ଦିଅନ୍ତି ତାହା ନିୟମିତ ପାଳନ କରା ଯାଉଛି କି ନାହିଁ ଗୃହରମାନେ ବରଫ ରଖି ରଖି ବିରକ୍ତ ହୋଇ-ଗଲେ ଓ ସେଇଠି ବସି ଢୁଲାଇବାରେ ଲାଗିଲେ । ମା ଗୃହରଙ୍କୁ

ଶୋଇବାକୁ ଆଦେଶ ଦେଇ ବରଫ ରଖିବା କାମ ନିଜେ ସମ୍ଭାଳିଲେ । ନିଜ କର୍ତ୍ତବ୍ୟ କରିବା ପାଇଁ ପ୍ରାଣପଣେ ଚେଷ୍ଟା କରୁଥାନ୍ତି । ସେଥିପାଇଁ ତାଙ୍କୁ ଏହି କାର୍ଯ୍ୟଟି ବଡ଼ କାର୍ଯ୍ୟଭଳି ଜଣାଗଲା ନାହିଁ । ସେ ରାତି ବାରଟା ପର୍ଯ୍ୟନ୍ତ ବିନା ପଲକ ପକାଇ ବରଫ ଦେବା କାର୍ଯ୍ୟରେ ରତ ରହିଲେ । ପରେ ପିତା ଆଗ୍ରହ କରି ତାଙ୍କୁ ଶୋଇବାକୁ ପଠାଇଲେ ଏବଂ ସ୍ୱୟଂ ପୁତ୍ର ଶୁଶ୍ରୂଷାରେ ମନ ଦେଲେ ।

ଜାଣେ ନା କାହିଁକି ମାତାଙ୍କୁ ସେ ଦିନ ନିଦ ଲାଗୁ ନ ଥାଏ ଅଳ୍ପ ସମୟ ପରେ ବାଳକ ଚିତ୍କାର କରି ଉଠିଲା—"ଓ ମା"

ଅକସ୍ମାତ ସାବତ ମା ଚେଇଁ ଉଠି ବସିଲା । ସେ ପତିଙ୍କ ହାତରୁ ବରଫ ଥଳିଟି ନେଇ ପୁନଃ ବାଳକଟିର ମୁଣ୍ଡ ପାଖରେ ବସିଲା ।

ରାତିର ନିସ୍ତବ୍ଧତାରେ ବାଳକ ପୁଣି ଚିତ୍କାର କଲା—"ମା !"

"କଅଣ ପୁଅ ?" ଏଇ ଶବ୍ଦ ତା ମୁହଁରୁ ବାହାରି ପଡ଼ିଲା କିନ୍ତୁ ସେ ତାଙ୍କୁ ଚୋକି ନେଲା । ପୁଅ ସମ୍ବୋଧନରେ ଅଳ୍ପ ଲଜ୍ଜା ଲାଗିଲା । ସେ କେବଳ ଏତିକି ମାତ୍ର ପଚାରିଲା—"ଧନ କାହିଁକି, କଅଣ ଦରକାର ? ବାଳକ ଆଖି ଖୋଲିଲା ଓ ସାବତ ମା ଆଡ଼କୁ ଚାହିଁଲା । "ତୁମେ ନୁହଁ," କହି ବାଳକଟି ଆଖି ବନ୍ଦ କଲା ।

'ଡାକିଥିଲି ଯେ ?"

"ମୁଁ ତ ମାକୁ ଡାକୁଥିଲି ।" ଆଖି ନ ବାଳକ ଉତ୍ତର ଦେଲା ।

"ମୁଁ ତ ତୋର ମା !"

ବାଳକଟି ଫେର ଆଖି ଖୋଲିଲା ଓ ମା ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଲା ।

"ହଁ, ମୁଁ ତ ମୋ ନିଜ ମା'କୁ ଡାକୁଥିଲି ।"

ସାବତ ମା'ର ହୃଦୟ ଥରିଗଲା, ତା ହୃଦୟ ବିଦୀର୍ଣ୍ଣ ହୋଇଗଲା । "ବର୍ତ୍ତମାନ ଶୁଦ୍ଧା ସେ ମୋତେ ନିଜ ମା ରୂପେ ସ୍ୱୀକାର କରୁ ନାହିଁ ।" ସେ କହିଲା—"ମୁଁ ତ ତୁମରି ନିଜ ମା ।"

"ନିଜ ମା ମୋତେ 'ତୁ' କହୁଥିଲା 'ତୁମେ' ନୁହ ।"

"ମୁଁ ତୋତେ କେତେବେଳେ" 'ତୁମେ' କହିଲି ? ମା ଅସତ୍ୟର ଆଶ୍ରୟ ନେଇ କହିଲା ।

"କିନ୍ତୁ ମୋ ନିଜ ମା ତ ମରିଯାଇଛି ?"

"ମୁଁ ପୁଣି ଫେରି ଆସିଛି, ଦେଖି ପାରୁନୁ ?"

"କାହିଁକି ?"

"ପୁଅ ତୋରି ପାଇଁ ।"

ସାବତ ମା ନିଜ ମା ହେଲା । ସେ ପ୍ରଥମ ଥର ପାଇଁ ବାଳକର ମୁହଁରେ ଚୁମ୍ବନ ଦେଲା । ତା ହୃଦୟରେ ମାତୃତ୍ୱର ନିର୍ଝରିଣୀ ଝରିବାକୁ ଲାଗିଲା । ବାଳକଟିର ଶ୍ରେଷ୍ଠ ଖଟୁଲିରେ ଶୋଇ ତାକୁ ଗୁଡରେ ଜାବୁଡ଼ି ଧରିଲା ।

ଏହି ପ୍ରେମ ଆବେଗର ଗଭୀର ଅର୍ଥ ବୁଝିବାରେ ବାଳକଟିର କୌଣସି ଆବଶ୍ୟକତା ନଥିଲା । ସେ ତ ମାତ୍ର ଏତିକି ଭାବିଲା ଯେ କେବଳ ନିଜ ମା ଏପରି ଗୁଡରେ ଲଗାଇ ଶୋଇପାରେ । ନିଜ ମା'କୁ କୁଣ୍ଢେଇ ଶୋଇବା ମାତ୍ରେ କୁସୁମାୟୁଧ ଗଭୀର ନିଦରେ ଶୋଇପଡ଼ିଲା । ତା ଶରୀରକୁ ଦାହ କରୁଥିବା ଅଗ୍ନି ଶାନ୍ତ ହୋଇଗଲା ।

ବର୍ତ୍ତମାନ ତା ମୁଣ୍ଡରେ ବରଫ ରଖିବାର ଆବଶ୍ୟକତା ନାହିଁ । ଆଜି ବାଳକଟି ମା'ର ଅମୃତ-ପୂର୍ଣ୍ଣ କୋଳ ପାଇ ଯାଇଛି ।

* * *

# ଖେମୀ

ସ୍ୱ: ରାମନାରାୟଣ ବିଶ୍ୱନାଥ ପାଠକ

"ଏ ହେ, ଏମିତି କେତେ ନିଆଁକାଠି ଜଳେଇ ଦେବୁ କି ? ଗୋଟେ ପେଡ଼ି ଦୁଇଦିନ ଚଳେଇବୁ ନାହିଁ ?" ଗୋଟି ଗୋଟି କରି ଧନିଆ ପାଞ୍ଚୋଟି ନିଆଁକାଠି ଜଳେଇଦେଲା, ତେଣୁ ଖେମୀକୁ ଏତକ କହିବାକୁ ପଡ଼ିଲା ।

"କିନ୍ତୁ ଟିକିଏ ଦେଖିଲୁ ତ ପବନ କିପରି ହଇରାଣ କରୁଛି । କାଠିକୁ ମୋଟେ ଜଳିବାକୁ ଦେଉ ନାହିଁ ।" ଧନିଆ ଫେରି ପେଡ଼ିଟି ଖୋଲିଲା ।

"ନିଅ, ମୁଁ କାନିରେ ଆଡ଼ କରୁଛି ।" ଖେମୀ ନିଜ କାନିଟିକୁ ମୁଣ୍ଡଉପରୁ ଟିକିଏ ଆଗକୁ ଟାଣିନେଲା ପୁଣି ଧନିଆ ପାଖକୁ ପବନ ରୋକିବା ପାଇଁ ତା ମୁହଁ ସାମନାରେ ଆଡ଼କରି ଠିଆ ହେଲା । ଧନିଆର ନିଆଁକାଠି ଜଳିଲା । ନିଶ୍ୱାସପ୍ରଶ୍ୱାସ ଦ୍ୱାରା ନିଆଁକାଠିର ଆଲୋକ କମିଲା—ବଢ଼ିଲା । ଧନିଆ ନିଜ ସ୍ତ୍ରୀର ଯୌବନ ପୂର୍ଣ୍ଣ ବିକଶିତ କାନ୍ତିମାନ ତଥା ବଡ଼ ବଡ଼ ଚେଞ୍ଚାସ୍ଥାନ ନିୟନ୍ତ୍ରିତ ଗହମ ରଙ୍ଗ ମୁହଁକୁ ଏକା ଲୟରେ ଅନାଇ ରହିଥାଏ । ବଡ଼ର ମଜା ଭୁଲି ନବୋଢ଼ାର ସୌନ୍ଦର୍ଯ୍ୟ ରସପାନରେ ନିମଜ୍ଜିତ ହେଲା । ଯେମିତି ବିଡ଼ି ଜଳିଗଲା ଖେମୀ ତା ଜାଗାକୁ ଯିବାକୁ ବାହାରିଛି ଠିକ୍ ସେତିକବେଳେ ଧନିଆ କହିଲା—

"ଦେଖ, ମୋ ରାଣ ଯଦି ତୁ ଏଇଠୁ ଗଲୁ ।"

"ପାଗଳଙ୍କ ପରି କଥା କହନି," କହି ଖେମୀ ଯଥା ସ୍ଥାନକୁ ଫେରି ଆସିଲା ।

"ତୋ ଗୁଣ ଖେମୀ, ତୁ ମୋତେ ବଡ଼ ଭଲ ଲାଗୁଛୁ ।"

"ଦେଖ ଫେର ସେଇ କଥା । ଏଠି କେତେ ଲୋକ ଅଛନ୍ତି ସେଆଡ଼କୁ ନଜର ଅଛି କି ନାହିଁ ?"

"ଏମାନେ ଆପଣା ଖାଇବାରେ ମସ୍ତ ଅଛନ୍ତି । ଆମକୁ ଦେଖିବା ପାଇଁ କାହା ପାଖରେ ବେଳ ଅଛି ଯେ ? କେଉଁ ନବ ବିବାହିତ ଦମ୍ପତି ଏପରି କଥା କହନ୍ତି ନାହିଁ ଯେ ?

ଆଜି ଧନିଆର ସାହୁକାର ଘରେ ଜାତି ଭାଇ ଭୋଜି ଥିଲା । ଦୁହେଁ ବଡ଼ିଆ ଭୋଜି ଆଶାରେ ଅତ୍ୟନ୍ତ ଖୁସି ହୋଇ ପାଇଖାନା ସିଡ଼ିରେ ବସି ଏକାନ୍ତ ଗୋଷ୍ଠୀ କରୁଥିଲେ । କାଳେ ଅଇଁଠା ସାଉଁଟି ନେବା ଲୋକ ଭିତରକୁ ପଶି ଆସିବ ତେଣୁ ସେଠ୍ ସେମାନଙ୍କୁ ସେଇଠି ବସାଇ ରଖିଥିଲେ । କିଛିଦିନ ତଳେ ନିଜ ବିବାହରେ ଦୁହେଁ ଯେଉଁ ଲୁଗା ପିନ୍ଧିଥିଲେ ଆଜି ସେହି ଲୁଗା ପିନ୍ଧିଥାନ୍ତି । ଧନିଆ ମୁଣ୍ଡରେ ପଗଡ଼ି, ଗଳାରେ ରେଶମୀ ଲୁଗାର ଜାକେଟ୍ ତଥା ଗୋଡ଼ରେ ମୌଜା ପିନ୍ଧିଥିଲା ।

ସୁହାଗିନୀ ସେଠାଣୀର ମୃତ ଶରୀର ଉପରୁ ସ୍ମଶାନରେ ଯେଉଁ ରେଶମୀ ଶାଢ଼ୀଟି କଢ଼ା ଯାଇଥିଲା, ସେହି ଶାଢ଼ିକୁ ଖେମୀ ପିନ୍ଧିଥାଏ ।

ଧନିଆ ବଡ଼ରୁ କସେ ଟାଣିଲା ପରେ କହିଲା 'ଖେମୀ ତୋ ମା ପଛେ ଯାହା ମାଗନ୍ତା ମୁଁ ସେତକ ଦେଇ ତୋତେ ନିଶ୍ଚୟ ଆଣନ୍ତି ।"

"କିନ୍ତୁ ମା କେବେ ତୋଠାରୁ ପାହୁଲାଟାଏ ନେଇଛି ? ଓଲଟା ମୁଁ ସାଥିରେ କିଛି ଧରି ଆସିଲି । ମୋ ମା ତ ବ୍ରାହ୍ମଣ ଘର ପରି ବିବାହ କରାଇଲା ।"

"ତୋ ମା ଭାରି ଭଲ ମାଇପିଟିଏ । କେଜାଣି କେଉଁଠୁ ତୁ ଏଡ଼େ ଦୁଷ୍ଟ ହୋଇ ବାହାରିଲୁ ।"

"କଅଣ ? ବଡ଼ ଭଲ କଥା ତ ମୁଁ ତୋର କଅଣ ଅନିଷ୍ଟ କଲି ?"

ଦେଖ ବିବାହ ବେଳେ ତୁ କେତେ ରଙ୍ଗ ଢଙ୍ଗ ଦେଖାଇଲୁ, କେତେ ନା, ନାହିଁ କଲୁ— 'ମଦନ ପିଇଲେ, ଗାଳି ନ ଦେଲେ, ମୋ ଦେହରେ ହାତ ନ ଦେଲେ ବିବାହ କରିବି ନହେଲେ ନାହିଁ । ଯଦି ସେ ଏପରି କରେ ତେବେ ତାକୁ ଛାଡ଼ି ଚାଲିଯିବି —' ଭଲ ଏମିତ କେବେ ହେଲଣି ।

"ହେବ ନାହିଁ, କାହିଁକି ? ତୁ ମଦ ଖାଇ ଘରକୁ ଆସିବୁ, ମତେ ପିଟା କରିବୁ, ଏଆଡ଼୍ ସେଆଡ଼୍ ଗୁଡ଼ାଏ କଥା କହିବୁ, ଗାଳି ଦେବୁ— ଏସବୁ ମୁଁ ସହି ପାରିବି ନାହିଁ । ଦେଖ ମାଡ଼ ଖାଇବାବାଲି ଆଉ କେଏ ହୋଇଥିବ ।"

ଧନିଆ ଖେମୀର ଖୋଲା କଥା ତଥା ନିର୍ଭୀକତା ଦେଖି ଟିକିଏ ବଢ଼ିଗଲା—"ଭଲ କଥା ! ଭଲ ମୁଁ କାହିଁକି ମଦ ଖାଇବାକୁ ଯିବି ଯେ ତୁ ବଡ଼ି ବଡ଼ି କଥା କହୁଛୁ । ମୋର ଯାହାହେଉ ପଛେ ହେଉ, ତୋ ସହିତ ବିବାହ କରିବାର ଥିଲା । ତୁ ଯେତେବେଳେ ଛୋଟ ଥିଲୁ ଆଉ ଗାଣ୍ଠ * ବାନ୍ଧି ମା ସହିତ ଝାଡ଼ୁ ମାରିବାକୁ ଆସୁଥିଲୁ, ସେହିଦିନୁ ମୁଁ ତୋତେ ଭଲ ପାଉଥିଲି । ଖେମୀ ତୁ ଏପରି ଗାଣ୍ଠ ବାନ୍ଧିବା କେଉଁଠୁ ଶିଖିଲୁ ?" ଧନିଆ ଖେମୀର ଛାତିରେ ପଡ଼ିଥିବା ଲୁଗା ଗଣ୍ଠିକୁ ଛୁଇଁଲା ।

ପଡ଼ଧରୀରେ ! ସବୁ ସ୍ତ୍ରୀମାନେ କାମ କରିବା ସମୟରେ ଏହିପରି କରିଥାନ୍ତି ପ୍ରକୃତରେ ଖେମୀର ମା କାଠିଆବାଡ଼ ପଡ଼ଧରୀ ଗାଁର ନିବାସୀ ଥିଲା । ଅକାଳବେଳେ ଖେମୀକୁ ଧରି ଏଆଡ଼େ ଆସିଲା ।

"ଧନିଆ କହିଲୁ ତୁମ୍ଭେମାନେ କାହିଁକି ମଦ ଖାଅ ? ମଦରେ ଏପରି କଣ କଥା ଅଛି ଯେ ? ତୁ ତ କହୁଛୁ ମଦ ପିତା ଲାଗେ ।

"ଖେମୀ ! କେବେ କପରି ମନ ଖରାପ ହେଲେ, ପିଇବା ଦରକାର ପଡ଼େ । ବହୁତ କ୍ଳାନ୍ତ ହୋଇଥିବ ଓ ମନ ମଧ୍ୟ ଖରାପ ଲାଗୁଥିବ, ସେହି ସମୟରେ ପିଇଲେ ସବୁ ଠିକ୍ ହୋଇଯାଏ ।"

---

* ମୂଲିଆ ସ୍ତ୍ରୀମାନେ ପଟେ କାନିଟିକୁ ଏପରି ବାନ୍ଧନ୍ତି ଯେ ତାର ଗଣ୍ଠି ଛାତିର ଦୁଇ ସ୍ତନମଣ୍ଡଳ ମଧ୍ୟରେ ରହିଥାଏ । ଏହି ଗଣ୍ଠିକୁ ଗାଣ୍ଠ କହନ୍ତି ।

କିଛିକ୍ଷଣ ପାଇଁ ଖେମୀ ଚୁପ୍ ରହିଲା । ପୁଣି ଥରେ ନିଜର ସୌଭାଗ୍ୟ ଓ ପ୍ରକୃତ ବିଷୟରେ ଶୁଣିବା ପାଇଁ ଇଚ୍ଛା ହେଲା । ସେ ପଚାରିଲା "ଧନଆ ! ଯଦି ମୋର ବିବାହ ଆଉ କେଉଁଠି ହୁଅନ୍ତା ?"

"ମୁଁ ଜାଣେନା ଏମିତି କିଏ ଅଛି ଯାର ମା'କ ସେରେ ପାଏ ସୁଣ୍ଠି * ଖାଇଥିବ ଓ ସେ ତୋ ସହ ବିବାହ କରନ୍ତା । ସେଉଁଠି ଗଲେ ମଧ୍ୟ ମୁଁ ତୋତେ ଟେକି ଆଣନ୍ତି ।"

ଖେମୀ କହିଲା—"ହଁ, ସେତିକ ଥାଉ, ସେତିକ ଆଉ ଏମିତି ଗର୍ବ କରନା । ଏହି ସଂସାରରେ ଜଣକୁ ବଳି ଜଣେ ହୋଇଥାନ୍ତି ।"

ଏତିକବେଳେ ସେଠାରେ ପାଟି ତୁଣ୍ଡ ଶୁଣାଗଲା । ଗୋଟିଏ କୁକୁର ଭିତରେ ପଶି ପଡରି ଅଇଁଠା କରିଦେଲା । ତାକୁ ମାରି ପିଟି ବାହାରକୁ ତଡ଼ି ଦିଆଗଲା । ସେଠଙ୍କ କ୍ରୋଧ ହେଲା । ସେ ଭଣ୍ଡାରୀକୁ ଖୁବ ବହୁତ ଗାଳିଦେଲେ । ଭଣ୍ଡାରୀ ମେହନ୍ତରକୁ ଦୋଷୀ ସାବ୍ୟସ୍ତ କଲା । ସେଠ ସମସ୍ତ ରାଗ ମେହନ୍ତର ଉପରେ ଦେଖାଇଲେ—"ନିଜେ ବଡ଼ ଲାଟ ସାହେବ ହୋଇ ବସିଛୁ, ହାତରେ ପୁଣି ବାଡ଼ି । ଆଉ କୁକୁର ଆଡ଼େଇ ପାରୁନୁ ? ଉଠ ଏଠୁ, ହାରାମଜାଦା"··· ! କେବଳ ମାରିବା ଅଭିପ୍ରାୟଟି ବାକି ରହିଗଲା ।

ଧନଆ ତଥା ଖେମୀକୁ ବଡ଼ ଖରାପ ଲାଗିଲା । ସେମାନଙ୍କ ପ୍ରେମ ଆଳାପରେ ବାଧା ପଡ଼ିଥିଲା । ସେମାନଙ୍କର ସମସ୍ତ ଉତ୍ସାହ ଉଭେଇ ଗଲା । ଦୁହେଁ କିଛି ନ କହି ଉଠି ଚାଲିଗଲେ । ସେମାନେ ଯିବେ କେଉଁଠି ଆଗରୁ ନିଶ୍ଚିତ ନଥିଲା । ଶିଟିସେଣ୍ଟରର ଜନଗହଳି ସେମାନଙ୍କୁ ଅନାୟାସରେ ଆନନ୍ଦ ପ୍ରଦାନ କରିବ, ଏହିପରି ଭାବି ଖେମୀ ଶିଟସେଣ୍ଟରରେ ଚାଲିଲା । ଧନଆ ଅତି ଦୁଃଖିତ ଥାଏ, ତେଣୁ ଖେମୀ ତାକୁ ଆଶ୍ୱାସନା ଦେବାପାଇଁ ଚେଷ୍ଟା କଲା । ଧନଆ ସେଠିତ କିଛି କହିପାରିଲା ନାହିଁ, ପରନ୍ତୁ ବର୍ତ୍ତମାନ ସେ କହିଲା 'କୁକୁର ଅଡ଼େଇବା କାମ ଭଣ୍ଡାରୀର, ଫେର ସେଠ ମୋ ଉପରେ ଗର୍ଜିଲା କାହିଁକି ?' ଖେମୀ ପୁଣି ଆଶ୍ୱସନା ଦେଲା । ତେବେଯାଇ ଧନଆ ତାର ପ୍ରକୃତ ଦୁଃଖର କାହାଣୀ କହିଲା—"ଆଉ କିଛି ନାହିଁ ଯେ,

---

* ୧ । ଗୁଜରାଟରେ ପ୍ରସୂତି ଅବସ୍ଥାରେ ଶୁଣ୍ଠି ଖୁଆଇବା ରୀତି ରହିଛି । ( ଏଠି ପରାକ୍ରମ ନିଦର୍ଶନରେ ବ୍ୟବହୃତ )

ତୋ ଆଗରେ ସେଠ ମୋତେ ଏତେ କଥା କହିଗଲା, ଏଇଟାହିଁ ମୁଁ ସହି ପାରୁ ନାହିଁ ।"

ଖେମୀ ଗଭୀର ଭାବନାରେ ନିମଗ୍ନ ହେଲା । ସେ ଧନିଆକୁ ଅନ୍ୟାନ୍ୟ କଥାରେ ଭୁଲାଇଲା । ଧନିଆର ଏଡ଼େବଡ଼ ଅପମାନ ହେଲା, ସେ କଥା ତା ହୃଦୟକୁ ଖାଣ୍ଡିଚକଟି ପକାଇଲା । ଧନିଆ ଖିନ୍ନ ହୋଇ ଧୀରେ ଧୀରେ ଚାଲୁଥାଏ । ତା ହୃଦୟ ଖଣ୍ଡ ଖଣ୍ଡ ହୋଇ ବିଦୀର୍ଣ୍ଣ ହେଲା । ଆଗକୁ କିଛି ଦୂର ଗଲାପରେ ବୃଦ୍ଧ ପଣ୍ଡାର ମଦଦୋକାନ ରାସ୍ତା ପଡ଼ିଲା । ଖେମୀର ମନେପଡ଼ିଲା ମଦ ପିଇଲେ ଧନିଆର ସମସ୍ତ ଉଦାସୀନତା, ସନ୍ତାପ ଦୂର ହୋଇଯାଏ । ସ୍ତ୍ରୀ ସୁଲଭ କୋମଳତା ଯୋଗୁଁ କାନିର ଗଣ୍ଠି ଫିଟାଇ ଅଧୁଲିଟି ବାହାର କଲା ଓ ଧନିଆ ହାତରେ ଦେଇ କହିଲା "ଆଉ କେତେବେଳେଯାଏ ମୌନ ହୋଇ ରହିବୁ । ଯା, ସେଠୁ ମଦ ଖାଇ ଆ । ଜଲ୍‌ଦି ଫେରିବୁ । ମୁଁ ଏଠି ଠିଆହୋଇ ରହିଲି ।" ଧନିଆ ମହାନନ୍ଦରେ ତତ୍‌କ୍ଷଣାତ ଚାଲିଗଲା ।

ଖେମୀ ତା ବାଟ ଚାହିଁଥାଏ ଓ ମନେ ମନେ ବିଚାର ଭ୍ରମରେ ପଡ଼ି ଭାବୁଥାଏ, ନିଜେ ମଦ ନ ଖାଇବାକୁ ପଣ କରାଇଲା, ପୁଣି ମଦ ଖାଇବା ପାଇଁ ନିଜେ ପଇସା କାଢ଼ି ଦେଲା । ଏହି ସମୟରେ ଧନିଆ ଖୁସି ଖୁସି ଫେରି ଆସିଲା, କହିଲା "ଖେମୀ ଦେଖିଲୁ, ଏଥର ମୁଁ ଠିକ୍ ହୋଇଗଲି । ମୁଁ କହୁ ନଥିଲି, ମଦ ଖାଇଲେ ମୋ ମନ ଠିକ୍ ହୋଇଯାଏ ।" ଖେମୀ କହିଲା— "ଏଥର କଥା ଛାଡ଼ । କିନ୍ତୁ ଖବରଦାର; ପୁଣି ଯଦି କେବେ ଖାଇ, ଘରୁ ବାହାର କରିଦେବି ।"

"ନାଁ ନାଁ ଖେମୀ ! ଆଉ କେବେ ଖାଇବି ନାହିଁ । ତୁ ମୋତେ ଭାରି ଭଲ ଲାଗୁଛୁ । ଏଥର ସେଠର ଭୋଜି ଚୁଲିରେ ଯାଉ । ମୁଁ ମଦ ପିଏ କିନ୍ତୁ ତାର ନିଶା ମୋ ଉପରେ ଚଢ଼େନାହିଁ । ଦେଖ, ବର୍ତ୍ତମାନ ମଧ୍ୟ ମୋ କଥା କହିବା ଢଙ୍ଗରେ କିଛି ଅନ୍ତର ଜଣାଯାଉଛି ? ତୁ ତ ମିଛଟାରେ ଡରୁଛୁ । ଯେତେ ଇଚ୍ଛା ସେତେ ମଦ ପିଇଲେ ମଧ୍ୟ ମୁଁ ତୋତେ ମାରିବି ନାହିଁ । ତୁ ମୋର କେଡ଼େ ପ୍ରିୟ......" ଆଦି ପାଟି କରି କରି ଧନିଆ ଚାଲିବାକୁ ଲାଗିଲା । ଖେମୀ ଚୁପଚାପ ଗମ୍ଭୀର ହୋଇ ଏହି କଥା ବିଚାର କରୁ କରୁ ତାକୁ ଘରେ ନେଇ ପହଞ୍ଚିଲା ।

( ୨ )

ଯେଉଁ ଗୀତ (ଗଣ୍ଠ) କୁ ଦେଖି ଧନିଆ ଅହମଦାବାଦରେ ମୁଗ୍ଧ ହୋଇ ପଡ଼ିଥିଲା ସେଇ ଗୀତ ବାନ୍ଧ ଖେମୀ ସନ୍ଧ୍ୟା ସମୟରେ ହାତରେ ଝାଡ଼ୁ ଧରି ଝାଡ଼ୁଥାଏ, କିନ୍ତୁ ବର୍ତ୍ତମାନ ସେ ଅହମଦାବାଦରେ ନ ଥିଲା । ବର୍ତ୍ତମାନ ତା ନିକଟରେ ଧନିଆ ମଧ୍ୟ ନାହିଁ । ସେ ତାକୁ ଛ ମାସ ହେଲା ଛାଡ଼ି ସାରିଥିଲା । ଉକ୍ତ ଘଟଣାର କିଛି ଦିନ ପର କଥା, ମଦ ପିଇବି ନାହିଁ ବୋଲି ପଣ କରିଥିଲେ ମଧ୍ୟ, ଖେମୀ ସବୁ କିଛି ସହି ନେବ ଏହି ବିଶ୍ୱାସରେ, ପୁଣି ସ୍ତ୍ରୀଙ୍କ ଆଗରେ ପଣ ରକ୍ଷା କରିବା ନିଜ ଦୁର୍ବଳତାକୁ ପ୍ରକାଶ କରିବା ଭାବି, ତାର ମଦ ନିଶା ଚଢ଼େ ନାହିଁ, ଏହି ଗର୍ବରେ ତଥା କୁସଙ୍ଗତରେ ପଡ଼ି ସେ ମଦ ପିଆ ଆରମ୍ଭ କରିଦେଲା । ଖେମୀ ଅନେକ ଥର ତାକୁ ଧମକେଇଲା, ତିରସ୍କାର କଲା, ଛାଡ଼ି ପଳାଇ ଯିବାର ଭୟ ଦେଖାଇଲା, କିନ୍ତୁ ଧନିଆ ସେ ସବୁ ମିଛ ମଣି କୌଣସି ଧ୍ୟାନ ଦେଲା ନାହିଁ । ଶେଷରେ ଦିନେ ପ୍ରଚୁର ପରିମାଣରେ ମଦ ପିଇ ଆସିଲା, ଛାଡ଼ି ଯିବ କୁଆଡ଼େ ? ଗର୍ବରେ ପଡ଼ି ଖେମୀକୁ ପ୍ରହାର କଲା । ଦ୍ୱିତୀୟ ଦିନ ଖେମୀ ଚାଲିଗଲା । ତା ମା ମରି ଯାଇଥିଲା, ତେଣୁ ସେ ନଡ଼ିୟାଦ ଗଲା ତଥା ମ୍ୟୁନିସିପାଲିଟି ମେହେନ୍ତରଙ୍କ ଜମାଦାର ସହ ସାକ୍ଷାତ କଲା । ତା ନାଁ ପୁରୁଷୋତ୍ତମ, ଖେମୀ ନିଜ ଦରମାରୁ ପାଞ୍ଚଟି ଟଙ୍କା ତାକୁ ଦେବା ପାଇଁ ରାଜି ହେଲା ଓ ଚାକିରି ମିଳିଗଲା । ସାଧାରଣତଃ ନଡ଼ିୟାଦରେ ସେ ମନ ମୌଜ ରୂପେ ଦିନ କାଟ ଥିଲା । ସବୁ ମେହେନ୍ତର ତା ସହିତ ଥଟ୍ଟା—ତାମସା କରୁଥାନ୍ତି କିନ୍ତୁ ଧନିଆର ସ୍ମୃତି ତାକୁ ବାରମ୍ବାର ହଇରାଣ କରୁଥାଏ । ଅହମଦାବାଦରୁ ଯେ କୌଣସି ମେହେନ୍ତର ଆସିଲେ, ତା'ଠାରୁ ଧନିଆ ବିଷୟରେ ସମାଚାର ଜାଣିବା ପାଇଁ ଅତ୍ୟନ୍ତ ଆତୁର ହୋଇ ପଡ଼େ । ସେ ଜାଣିଥିଲା ଯଦି ସେ ପୁଣି ଧନିଆ ପାଖକୁ ଫେରିଯାଏ ସେ ଅତ୍ୟନ୍ତ ପ୍ରେମର ସହ ରଖିନେବ । କିନ୍ତୁ ନ ଡାକୁଣୁ ଧନିଆ ପାଖକୁ ଯିବା ନିଜ ଗୌରବ ବିରୁଦ୍ଧ ମନେ କରୁଥାଏ । ଧନିଆ ମୋତେ ପୁଣି ଡାକୁ, ଏହି ଉଦ୍ଦେଶ୍ୟରେ ସେ ଅନେକ-ଗୁଡ଼ିଏ ମାନସିକ ରଖିଲା କିନ୍ତୁ ଧନିଆର ଡାକରା ଆସିଲା ନାହିଁ । ତେଣୁ ସେ ନିରାଶ ହୋଇଗଲା ଓ ନିରାଶାରେ ହୃଦୟକୁ ଉତ୍ୟକ୍ତ କରି ସମସ୍ତ ରାଗ ଲାଞ୍ଚଖୋର ପୁରୁଷୋତ୍ତମ ଉପରେ ଦେଖାଉଥିଲା । ସେ ତାକୁ ଚିଡ଼ାଇବା ପାଇଁ ଗୀତଟିଏ ମଧ୍ୟ ରଚନା କରିଥାଏ ।

ଖେମୀ ଖରକୁ ଥାଏ । ନିକଟରେ ଝାଡ଼ୁ ଦେବାବାଲି ମଙ୍ଗୀ କହିଲା "ଏ ଖେମୀ, ସେ ଗୀତଟି ଗାଇଲୁ ।" ଖେମୀ ଧନ୍ଦାଆ ଚନ୍ତାରେ ମଗ୍ନ ଥିଲା । ସେ ସ୍ୱାଭାବିକ ଭାବରେ କହିଲା "ତୁ ଗା' ନା ।"

ମଙ୍ଗୀ ଖେମୀ ପରି ଗାଇ ଜାଣି ନ ଥାଏ । ସେ କହିଲା—"ଗୀତର ଚତୁର୍ଥ ପଦରେ ମେଳ ଠିକ୍ ବସୁ ନାହିଁ ।"

"ପଦ ବସୁନି କାହିଁକି ? ତୋତେ ବୋଲି ଆସୁ ନ ଥିବ ।"

"ତା ହେଲେ ତୁ ନିଜେ ବୋଲି ଦେଖିଲୁ ।"

ଖେମୀ ବୋଲିବାକୁ ଆରମ୍ଭ କଲା ।

ଓରେ ଆବ୍ୟନେ କେଶଲା ଚାରେ ଓଣଲେ କଟୁଁ
ଓରେ ଆବ୍ୟନେ କେଶଲା, ତନେ ପାଝଏ ପିଝୁଁ
ଓରେ ଆବ୍ୟନେ କେଶଲା, ତନେ ଧୋକଣେ ଡ଼ିବୁଁ,
ଓରେ ଆବ୍ୟନେ କେଶଲା, ଚାରେ ପୁଁଛଡ଼ୁ ଲିବୁଁ ।

( ଓଡ଼ିଆରେ ଅନୁବାଦ )

ଆରେ ଏ କେଶଲା ! ଏଇଠି ଆ, ତୋର ମରସିଆ ଗାଇବି ।
ଆରେ ଏ କେଶଲା ! ଏଇଠି ଆ, ତୋତେ ଲାତ ମାରିବି ।
ଆରେ ଏ କେଶଲା ! ଏଇଠି ଆ, ତୋତେ ମୁଷଳରେ ପିଟିବି ।
ଆରେ ଏ କେଶଲା ! ଏଇଠି ଆ, ତୋ ନାଣରେ ଲେମ୍ବୁ ।

ଦେଖିଲୁ ଏଇଠି ପଦ ବସିଲାନି କପରି ?

"ମରନ୍ତୁ ଏଇଟା ଯତିପାଦ ଅନୁସାରେ ଠିକ୍ ହେଲା । କିନ୍ତୁ ତୋ ନାଣରେ ଲେମ୍ବୁ" ଭଲି ଏଇଟା କିପରି ହେବ ?

"ନାଣ ଥିଲେ, ନାଣ ଉପରେ ଲେମ୍ବୁ ରଖି ଭଲି ଦେଖିବ ? ଏତ ନାଣରେ ଲେମ୍ବୁ ରଖିଛି, ଅର୍ଥାତ୍ ଜଣେ ମାଇଚିଆ ।"

ମଙ୍ଗୀ ଖିଲଖିଲେଇ ହସିଲା । ପୁରୁଷୋତ୍ତମର ଗୋଟା ଲମ୍ବା ଚେହେରାରେ ଥିବା ଖୁବ ଛୋଟ ଛୋଟ ବଉଳ ନାଣ ନ ଥିଲା ପରି ଜଣା ଯାଏ ।

ଦୁହେଁ ଅତି ଉତ୍ସାହର ସହ ଗୀତ ବୋଲିବାକୁ ଲାଗିଲେ । ଏତିକିବେଳେ ପୁରୁଷୋତ୍ତମ ଆସି ପହଞ୍ଚିଲା । ମୁଣ୍ଡରେ ଲୋମପୂର୍ଣ୍ଣ ଟୋପି ପିନ୍ଧିଥିଲା । କମିଜ ଉପରେ କଳା ହାଫ୍ କୋଟ ପିନ୍ଧିଥାଏ । ହାତରେ ପତଳା ବେତଟିଏ ଥାଏ । ସେ ଯୁଚାକୁ ବେତରେ ମାରି ମାରି ଆସୁଥିଲା

ସ୍ତ୍ରୀମାନଙ୍କର ଗୀତ ବୋଲି ଶୁଣିଲା । ସେ ଗୀତରେ ତାର ନିଜ ନାମ ନ ଥିଲା କି ସିଧା ସଳଖ ତା ବିଷୟକ ଚର୍ଚ୍ଚା ମଧ୍ୟ ନ ଥିଲା । ତେବେ ସୁଦ୍ଧା କାବ୍ୟ-ବିବରଣର କୌଣସି ଗୂଢ଼ ଅର୍ଥରୁ ସେ ଜାଣିପାରିଲା ଯେ ଗୀତଟି ନିଶ୍ଚୟ ତାକୁ ଉଦ୍ଦେଶ୍ୟ କରି ବୋଲାଯାଉଛି । ମନ ହିଁ ମନର ସାକ୍ଷୀ—ଏଇ ଉକ୍ତିଟି ଜୀବନର ଅନ୍ୟାନ୍ୟ କ୍ଷେତ୍ର ଅପେକ୍ଷା ଚଢ଼ାଇବା କ୍ଷେତ୍ରରେ ସତ୍ୟ ପ୍ରମାଣିତ ହୁଏ । ସେ ଖୁବ ଜୋରରେ ଚିତ୍କାର କଲା—"ଏ ହାରାମଖୋରମାନେ କାମ କର, କାମ । କୁଛାଣ୍ଟାରେ ଗଳା ଫଟେଇ ଦେଉଛ କାହିଁକି ?"

ମଙ୍ଗୀ ଲଜ୍ଜିତ ହେଲା, କିନ୍ତୁ ଖେମୀ ଉତ୍ତର ଦେଲା—"ହଁ, ହଁ ଗୀତ ବୋଲୁଛୁ, କିନ୍ତୁ ଦେଖୁଛ ପରା, ହାତ ତ କାମ କରୁଛି ।"

"ବଦ୍‌ଯାତ୍ ଜବାବ ଦେଉଛି ! ଅଧିକାରୀର ଅପମାନ କରୁଛି ।"

"କିନ୍ତୁ ମୁଁ ତୁମ ନାଁରେ ଗାଉନାହିଁ ତ ?"

"ତୁ ଗାଁ ସାରା ଗୀତ ବୋଲି ବୁଲୁଛୁ, ମୋର ଅପମାନ କରୁଛୁ, ମୁଁ କଅଣ ଜାଣିପାରୁ ନାହିଁ ନା କଅଣ ?"

ମଙ୍ଗୀ ଆଡ଼କୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଖେମୀ କହିଲା—"ଦେଖିଲୁ ଲୋ, କେବେ ହେଲେ ମୁଁ ପଶାଭାଇ ନାଁରେ ଗୀତ ବୋଲୁଛି ? ଅହମଦାବାଦରେ ଜଣେ କେଶଲ ଥିଲା ଯେ ମେହନ୍ତରମାନଙ୍କର ପଇସା ଖାଇଯାଏ । ମୁଁ ତା ନାଁରେ ଗୀତ ବୋଲୁଛି ।"

"ହାରାମଖୋର ! ମୋତେ ବୁଝାଇବାକୁ ଆସିଛୁ । ଅଧିକାରୀର ଅପମାନ କରୁଛୁ ? କଅଣ ତୋତେ ଦିଶୁନାହିଁ, ଆମେ କିପରି ଆମ ଅଧିକାରୀଙ୍କ ସମ୍ମାନ କରୁଛୁ । ମୁହାଁମୁହିଁ ଜବାବ ଦେଉଛୁ ?"

"କିନ୍ତୁ ଭାଇ ସାହେବ……"

"ଚୁପ, ପାଟି ବନ୍ଦକର । ବକ୍‌ବକ୍ ବନ୍ଦକର । ଆମର ଅନ୍ୟ କାର୍ଯ୍ୟ ମଧ୍ୟ ରହିଛି । ଏଠି ଟିପଚିହ୍ନ ଦେ, ଯେପରିକି ମୁଁ ଦରମା ଦେଇ ଦିଏ ।" ସେ ପାଖରେ ଥିବା ଚବୁତରାରେ କାଗଜଟି ରଖି ଦେଲା । ପ୍ରଥମେ ମଙ୍ଗୀ ଟିପ ଚିହ୍ନ ଲଗାଇଲା, ପରେ ସେ ଖେମୀକୁ ଟିପ ଚିହ୍ନ ଦେବା ପାଇଁ କହିଲା ।

"ପ୍ରଥମେ ମୋତେ ଦରମା ଦିଅ, ତାପରେ ଟିପ ଚିହ୍ନ ଦେବି ।"

"ବାଃ ବାଃ ଲୋ, ତୁ ସାହୁକାର ହେଲୁ ଆଉ ସରକାର ଭୁଲ ହୋଇଗଲା ? କାମ ସରକାରୀ ନିୟମାନୁସାରେ ହେବ । ପ୍ରଥମେ ଟିପ ଚିହ୍ନ ଦେ ପରେ ଦରମା ନେବୁ ।"

"ନେ ନେ ଟିପ ଚିହ୍ନ"—କହି ପରସୋତ୍ତମକୁ ବୁଢ଼ା ଆଙ୍ଗୁଠି ଦେଖାଇ ପରେ ଟିପ ଚିହ୍ନ ଦେଲା । ପରସୋତ୍ତମ ଏସବୁ ଦେଖିଲା କିନ୍ତୁ କିଛି କହିଲା ନାହିଁ । କାରଣ ବର୍ତ୍ତମାନ ବିରକ୍ତ ହେବା ସମୟ ନୁହେଁ । ତାଙ୍କ ଦରମାରୁ ଅଧୁଲି ଅଧୁଲି କାଟି ବାକି ସାଢ଼େ ନଅ ଟଙ୍କା ତଳେ ଥୋଇ ଦେଲା । ମଙ୍ଗୀ ନିଜର ଟଙ୍କା ଗୋଟାଇ ନେଲା । ଖେମୀ କହିଲା— "ମୋତେ ପୂରା ଦରମା ଦେଲେ ନେବି ନ ହେଲେ ନାହିଁ ।"

"ନ ନେଲେ ନାହିଁ, ପଇସା ଭୂଇଁରେ ପଡ଼ିଥାଉ, ମୁଁ ଯାଉଛି ।" ସେ ଯିବାପାଇଁ ବାହାରୁଛି କି ନାହିଁ ଖେମୀ ଲମ୍ବା ଝାଡ଼ୁଟି କାନ୍ଧକୁ ଆଉଜେଇ ଦେଇ ବାଟ ଅଟକେଇ ଠିଆ ହେଲା—"ଏମିତି କୁଆଡ଼େ ଯାଇ ପାରିବ ?"

ଏତିକିବେଳେ ଅନ୍ୟ ସାହିର ମେହନ୍ତରମାନେ ପହଞ୍ଚି ଗଲେ । ପରସୋତ୍ତମ ଦେଖିଲା ବର୍ତ୍ତମାନ ତା ଚାଲି ଚଳିବ ନାହିଁ, ଅନ୍ୟ ମେହେନ୍ତରଙ୍କ ଦୃଷ୍ଟିରେ ଦଗାବାଜ୍ ବୋଲି ସାବ୍ୟସ୍ତ ହେବ । ତେଣୁ କଥାକୁ ନ ବଢ଼େଇ କହିଲା, 'ନେ ନେ ପଇସା, ଅଧୁଲି ଫେରା ।"

"ଆଗ ଟଙ୍କା ଦେ, ତେବେ ମୁଁ ଫେରାଇବି ।" ପରସୋତ୍ତମ ଟଙ୍କା ଫୋପାଡ଼ ଦେଲା । ଖେମୀ ନିଜ ଝାଡ଼ୁଟି ଗୁଞ୍ଜେଇ ଟଙ୍କା ଉଠାଇଲା । ପରସୋତ୍ତମ ପୁଣି ତଳେ ପଡ଼ିଥିବା ଅଧୁଲିଟି ମାଗିଲା । 'ଟିକିଏ ରହ, ଟଙ୍କାଟି ବଜେଇ ଦେଖି ନିଏ ।" ଅନ୍ୟମାନଙ୍କ ଆଡ଼କୁ ଅନେଇ ଟଙ୍କା ବଜାଉ ଥାଏ ।

ପରସୋତ୍ତମ ପୁଣି ଅଧୁଲି ମାଗିଲା ।

"ମୋତେ ମିଳୁ ନାହିଁ"—କହି ଖେମୀ ଚାଲିଗଲା । ଶେଷରେ ପରସୋତ୍ତମକୁ ନଇଁ ଧୂଳିରୁ ଅଧୁଲିଟି ଉଠାଇବାକୁ ହେଲା ।

ଆଜ୍ଞ ସମସ୍ତ ମେହନ୍ତର ଅଶ୍ରୁଙ୍କର ସହ ଖେମୀର ବ୍ୟବହାରରେ ଗର୍ବ ଅନୁଭବ କଲେ । ଖେମୀ ଗୀତ ବୋଲିଲା, ତା ସହ ସବୁ ମେହନ୍ତର ମଧ୍ଯ ବୋଲିବାକୁ ଲଗିଲେ ।

ଓରେ ଆବ୍ୟନେ କେଶଲ୍ଲ, ତାରେ ଓଣଲେ କୁଟୁଁ
ଓରେ ଆବ୍ୟନେ କେଶଲ୍ଲ, ତନେ ପାଟୁଏ ପିଟୁଁ ।
ଓରେ ଆବ୍ୟନେ କେଶଲ୍ଲ, ତନେ ଧୋକଣେ ଟୀବୁଁ
ଓରେ ଆବାନ୍ୟେ କେଶଲା, ତାରେ ମୁଁଛଡ଼େ ଲବୁଁ ।

ଆରେ କେଶଲା, ଏଇଠି ଆ, ତୋର ମରସିଆ ଗାଇବ ।
ଆରେ କେଶଲା, ଏଇଠି ଆ, ତୋତେ ଲାତ ମାରିବ
ଆରେ କେଶଲା, ଏଇଠି ଆ, ତୋତେ ମୂଷଳରେ ପିଟିବ ।
ଆରେ କେଶଲା, ଏଇଠି ଆ, ତୋ ନଣରେ ଲେମ୍ବୁ ।

ବାଙ୍କୋଇ ତଥା ଷ୍ଟେସନରୁ ଆସୁଥିବା ଯାତ୍ରୀମାନେ ଏହି ବିଚିତ୍ର ଗୀତ ଶୁଣିବା ପାଇଁ ଢେର ଠିଆ ହୋଇଗଲେ । ଏତିକିରେ ଡାକ ଶୁଣାଗଲା—

"ହଇଲୋ ଖେମୀ, ଏଣିକ ଅସିଲୁ ।" ଯେଉଁ ଗଳିରୁ ଡାକ ଶୁଣାଗଲା ଖେମୀ ସେହି ଗଳି ଆଡ଼କୁ ଚାହିଁଲା ଓ ଚକିତ ହୋଇ ଠିଆ ରହିଲା । ପରେ ସେଇ ଆଡ଼କୁ ଚାଲିଗଲା ।

( ୩ )

ତାର ଶାଶୁ ତାକୁ ଡାକିବାକୁ ଅସିଥିଲା । ପ୍ରଥମ ତିନି ଦିନ ଧନଆ ଓ ଖେମୀର ଆନନ୍ଦରେ ଖାଇବା ପିଇବାରେ କଟିଗଲା । ଚତୁର୍ଥ ଦିନ ରାତିରେ ଧନଆ ଓ ଖେମୀର କଥା ଆରମ୍ଭ ହେଲା । ନଡ଼ଆଦରେ ଖେମୀର ରହଣି, ଚାଲି-ଚଲଣ, ତା ଗୀତ, ତଥା ମେହନ୍ତରଙ୍କ ସହ ବ୍ୟଙ୍ଗ-ବିନୋଦ ଆଦି ସମସ୍ତ କଥା ଶୁଣି ସାରିଲା ପରେ ଧନଆ କହିଲା—

"ଖେମୀ, ସତେ ତୋ ହୃଦୟ ବଡ଼ କଠୋର", ଏଣେ ମୋ ମନ ଘର ଝେପ, କିଛି ଭଲ ଲାଗୁ ନ ଥାଏ । ତେଣେ ତୁ ମୌଜ କରୁ

ଥିଲୁ । ଆନନ୍ଦ ମନଉଥିଲୁ ।" "ମୋତେ ମଧ୍ୟ ଭଲ ଲାଗୁ ନଥାଏ କନ୍ତୁ ତୁ ନ ଡ଼ାକିବା ପୂର୍ବରୁ କିପରି ଆସନ୍ତି ?"

"ମୁଁ ତୋତେ ଡ଼ାକନ୍ତି କିପରି ? ମୋ ଦ୍ୱାରା ଅପରାଧ ହୋଇ-ଥିଲା, ମୋତେ ସଙ୍କୋଚ ଲାଗୁଥାଏ । ମା'ଙ୍କୁ କହେ କନ୍ତୁ ସେ ପ୍ରାୟ କହେ, "ରହ ଦୁଇ ତିନ ଦିନରେ ଆସିଯିବ । କେତେ ଦିନ ଆଉ ରହିବ ? କିନ୍ତୁ ତୁ ତ ତୋ କଥାରେ ଦୃଢ଼ ରହିଲୁ ।"

"ତୋର ଅପରାଧ ଯେଣୁ ମୋତେ ଡ଼ାକିବା କାମ ତୋର ।"

'କିନ୍ତୁ ଭଦ୍ରକାଳୀ-ମାତାଙ୍କ ପ୍ରଭାବ ବଡ଼ ବିଚିତ୍ର ।'

'କିପରି ?'

'ଦେଖି ପ୍ରଥମେ ରାମ ଦେ ପୀରଙ୍କ ଠାରେ ମାନସିକ କଲି, ତେବେ ମଧ୍ୟ ତୁ ଆସିଲୁ ନାହିଁ । ଫେର ହରଦିବା (ହରସିଦ) ମାତାଙ୍କଠାରେ ମାନସିକ କଲି, ଝାଁପଡ଼ ମା'ଙ୍କଠାରେ ମାନସିକ କଲି, କନ୍ତୁ ତୁ ଫେରିଲୁ ନାହିଁ । ଫେର ଭଦ୍ରକାଳୀ-ମାତାଙ୍କଠାରେ ମାନସିକ କରି ଘରକୁ ଗଲି । ସେତେବେଳେ ମା' କହିଲେ—'ଆରେ ଧନିଆ ତୁ ତ ଦିନକୁ ଦିନ ଶୁଖି ଗଲୁଣି । ଅଚ୍ଛା ରହ ତୋର ଦ୍ୱିତୀୟ ବିବାହ କରି ଦେଉଛି ।' ମୁଁ କହିଲି 'ନା, ନା, ମୋର ଦ୍ୱିତୀୟ ବିବାହ ଦରକାର ନାହିଁ, ଯଦି ଖେମୀ ଆସେ ତାକୁ ରଖି ପାରିବ ନ ହେଲେ ନାହିଁ ।'

'ମୁଁ ମଧ୍ୟ ଅନେକ ମାନସିକ କରିଛି, ତେବେ ତୋ ମା ଡ଼ାକିବାକୁ ଆସିଲା ।'

'ତୁ କାହା କାହା ପାଖେ ମାନସିକ କରିଛୁ ?'

'ମୁଁ ରାମ ଦେ ପୀରଙ୍କଠାରେ, ନଡ଼ିୟାଦ ସନ୍ତରାମ ଗୁରୁଙ୍କ ପାଖେ ଥାଳ * ଓ ମହାକାଳୀଙ୍କ ଠାରେ ବଳି ଦେବ ବୋଲି ମାନସିକ କରିଛି ।'

'ଆଲେ ବାପାଲେ । ମନେହେଲା ଯେମିତି ଧନିଆ ମୁଣ୍ଡରେ ବଜ୍ର ଛିଡ଼ିଗଲା ।' ଖେମୀ ତୁ ବଡ଼ ଖରାପ କଲୁ, ତୋ ମାନସିକ ବାବଦ ଖର୍ଚ୍ଚ ହେଲା ଆଠ ଟଙ୍କା, ମୋ ମାନସିକରେ ଖର୍ଚ୍ଚ ପଚିଶ

ଥାଳ * ଭୋଜନ ଥାଳିରେ ସଜାଇ ରଖିବା

ଟଙ୍କା ।' ବିବାହ ଖର୍ଚ୍ଚ ବାବଦକୁ ପ୍ରାୟ ଦୁଇ ଶହ କି ଦୁଇଶହ ପଚିଶ ଟଙ୍କା ଆଜି ପର୍ଯ୍ୟନ୍ତ ବାକି ରହିଛି । ସେ ପଟେଲ ସବୁବେଳେ ଆସି ତାଗିଦା କରୁଛି । କେତେବେଳେ ମୁଁ ଏସବୁ ସୁଝିବି ? ଭଦ୍ରକାଳୀଙ୍କର ତ ପ୍ରତ୍ୟକ୍ଷ ପ୍ରଭାବ ରହିଛି ।' କେଉଁ ମାନସିକ ଯୋଗୁଁ ଦୁହେଁ ପରସ୍ପରକୁ ପାଇଲେ ଠିକ୍ ଜାଣି ନ ପାରିବା ଯୋଗୁଁ ନିଷ୍ପତ୍ତି କଲେ ଯେ ସବୁତକ ମାନସିକ ଗ୍ରହଣ କରିଯାଉ, ତା ବ୍ୟତୀତ ଅନ୍ୟ ଗତି ମଧ୍ୟ ନାହିଁ ।

'ଆରେ, ଏଥିରେ ବ୍ୟସ୍ତ ହେବାର କଅଣ ଅଛି ? ଚାରି ଶହ ଟଙ୍କା ତ ବର୍ତ୍ତମାନ ସୁଝିପାରିବା । ନେ ମୋର ଗହଣାତକ ବିକି କରି ସୁଝିଦେବୁ'—ଖେମୀ ସାନ୍ତ୍ୱନା ଦେଇ କହିଲା ।

'ଆରେ ଆଉରି ପଞ୍ଚାୟତ ଦଣ୍ଡ ବାକି ରହିଛି । ସେ କଥା ମୁଁ ତୋତେ କହି ନାହିଁ ।'

ଆମ ସମାଜରେ ଅନେକ ଜାତି ରହିଛି । ସେଥିରେ ମଧ୍ୟ ଉଚ୍ଚ-ନୀଚ ଅନେକ ଶ୍ରେଣୀ ରହିଛି । ପ୍ରତ୍ୟେକ ଜାତି ତା ଅଧିନ ଗୋଟିଏ ନିମ୍ନ ଜାତି ଚାହେଁ । ଅହମଦାବାଦର ମେହେନ୍ତର କାଠିଆବାଡ଼ରୁ ଆସିଥିବା ମେହେନ୍ତରଙ୍କୁ ନୀଚ ମାନନ୍ତି । ବିବାହ କରିବା ସମୟରେ ଧନଆକୁ ଦୁଇ ଜାତିର ପଞ୍ଚକୁ ଭୋଜି ଖୁଆଇବାକୁ ହୋଇଥିଲା ଖେମୀ ଚାଲିଯିବା ପରେ କାଠିଆବାଡ଼ର ପଞ୍ଚ ଏକତ୍ରିତ ହେଲେ । ନିଜନିଜ ମଧ୍ୟରେ ବିଚାର-ବିମର୍ଷ ହେଲା । ପରେ ଅହମଦାବାଦ ପଞ୍ଚଙ୍କ ସହ କଥା ହେଲା । ଫେର ଅହମଦାବାଦ ପଞ୍ଚ ଏକତ୍ରିତ ହେଲେ । ଏତିକ ବେଳେ ଖେମୀ ଫେରି ଆସିଲା । ବର୍ତ୍ତମାନ ଦଣ୍ଡର ପ୍ରଶ୍ନ ତ ଉଠୁ ନାହିଁ । କିନ୍ତୁ ଏପର୍ଯ୍ୟନ୍ତ ଦୁଇ ପଞ୍ଚଙ୍କ ଖାଇବାରେ ଯାହା ଖର୍ଚ୍ଚ ହୋଇଛି ସେହି ଖର୍ଚ୍ଚର ଭାର ଧନଆ ମୁଣ୍ଡରେ ପଡ଼ିଲା । ଆମ ସମାଜରେ ଜାତିଗତ ରୁଢ଼ି ପ୍ରଥା ଓ ଜାତିଗତ ବ୍ୟବସ୍ଥା ମଧ୍ୟ ପ୍ରାକୃତିକ ବଣ୍ଟଣା ପରି ଅନିବାର୍ଯ୍ୟ ହୋଇଥାଏ ।

ଏହି ସବୁ ଶୁଣି ଖେମୀ ଚକିତ ହେଲା । ତେବେ ସୁଦ୍ଧା ଧନଆକୁ ସାହା ଭରସା ଦେଉଥାଏ । ପୁରୁଷମାନଙ୍କୁ ହତୋତ୍ସାହ ଦେଖିଲେ ସ୍ତ୍ରୀଙ୍କ ହୃଦୟରେ ବିଶେଷ ପ୍ରକାର ସାହସ ଆସିଯାଏ ।

କିନ୍ତୁ ଧନିଆ ମନରେ ଧୈର୍ଯ୍ୟ ନ ଥାଏ । ହତାଶ ହୋଇ ଖେମୀ କୋଳରେ ଶୋଇ ପଡ଼ିଲା, ଖେମୀକୁ ମଧ୍ୟ ନିଦ ଲାଗିଗଲା । ତିନି ଦିନର ଅପାର ସୁଖ ଭୋଗ କରି ଦମ୍ପତି ଦୁହେଁ ପୁଣି ଦୁଃଖ ସାଗରରେ ବୁଡ଼ିଗଲେ ।

ପର ଦିନ ଖେମୀ ସମସ୍ତ ଅଳଙ୍କାର କାଢ଼ି ବିକି କରିବାକୁ ଦେଲା—କିନ୍ତୁ ପତ୍ନୀକୁ ଅଳଙ୍କାର ଶୂନ୍ୟ ଦେଖିବା ପାଇଁ ତା ମନ ବଳୁ ନ ଥାଏ । ତେଣୁ, ସେ ଗହଣାତକ ନ ବିକି ବନ୍ଧା ରଖି ଟଙ୍କା ଆଣିଲା । ଯଦି ଗହଣା ବିକ୍ରୀ କରି ଦିଅନ୍ତା ତେବେ ଋଣ ସୁଝିବା ପାଇଁ ଥୋଡ଼ାଏ ଟଙ୍କା ପାଇଥାନ୍ତା । କିନ୍ତୁ ବନ୍ଧା ରଖିବା ଯୋଗୁଁ ଟଙ୍କା ଅଳ୍ପ ମିଳିଲା, ସେଣେ ସୁଧ ବାବଦକୁ ହେଣେକେ ବୁଡ଼ିଲେ । ଧନିଆ ଓ ଖେମୀ ଦୁହେଁ ଏ କଥାଟି ବୁଝିପାରିଲେ ନାହିଁ । ଦୁହେଁ ଅଧିକରୁ ଅଧିକ ଟଙ୍କା ଜମା କରି ଋଣ ସୁଝିବାରେ ଲାଗିଲେ । ଏହି ଅବସରରେ ଧନିଆର ମା ମରିଗଲା । ତା ମୃତ୍ୟୁ ଯୋଗୁଁ ପ୍ରାପ୍ୟ ହେ ଟଙ୍କା ଖର୍ଚ୍ଚ ହେଲା । ଛଅ ମାସ ପରେ ଖେମୀ ପ୍ରସୂତ ହେଲା । ତେଣୁ ତାର ଉପାର୍ଜନ ରାସ୍ତା ବନ୍ଦ ହେଲା । ପ୍ରସୂତ ଅବସ୍ଥାରେ ଧନିଆ ଖେମୀର ଯତ୍ନ ନେବା ଖୁବ କମ ପାଇଲା ତେଣୁ ଚିନ୍ତାରୁ ମୁକ୍ତ ହେବା ପାଇଁ ମଦପିଆ ଆରମ୍ଭ କରିଦେଲା ।

ଖେମୀ ଏଣୁଡ଼ିଶାଳରୁ ଉଠି ଦେଖେ ତ, ଧନିଆ ପୁଣି ମଦ-ଜାଲରେ ପଡ଼ି ଗଲାଣି । ସେ ଧନିଆକୁ ପୁଣି ଗାଳି ଦେଲା, ଧମକାଇଲା କିନ୍ତୁ ଏଥର ଗାଳିରେ ତିରସ୍କାର ନ ଥିଲା, ଥିଲା ଦୟାଭାବ । ସେ ମନେ କଲା ଧନିଆର ଏହି ଦୁରବସ୍ଥାର କାରଣ ସେ ନିଜେ । ତେବେ ମଧ୍ୟ ନିଜେ ମନକୁ କଠୋର କରି ଧନିଆକୁ ଧମକେଇଲା । ଧନିଆ କିଛି କହିଲା ନାହିଁ କିନ୍ତୁ ସେ ଦିନ ରାତିରେ ଆଉ ଘରକୁ ଫେରିଲା ନାହିଁ । ଖେମୀ ତାକୁ ରିଚରୋଡ଼ର ପାଦଚଲା ରାସ୍ତାରେ ପାଇଲା ଓ ଘରକୁ ଧରି ଆଣିଲା । ଖେମୀ ତାକୁ ବୁଝାଏ କିନ୍ତୁ ଧନିଆ ଏହାର ପ୍ରତିଉତ୍ତର ଦୀର୍ଘନିଶ୍ୱାସରେ ଦିଏ । ବର୍ତ୍ତମାନ ଖେମୀର ହୃଦୟ ଦ୍ରବିତ ହୋଇଗଲା । ତା ହୃଦୟରେ ଉପଦେଶ ଦେଇ ପାରିବା ଭଳି କଠୋରତା ଆଉ ନ ଥାଏ ।

ଦିନେ ଭୟଙ୍କର ଶୀତ ରାତିରେ ଧନିଆ ଆଉ ଫେରିଲା ନାହିଁ । ଦୁଇବର୍ଷର ଶିଶୁକୁ କାନ୍ଧ କରି ଚାଲେ ଢେ଼ଥିବା ଅବସ୍ଥାରେ ଘରେ ବନ୍ଦ

କଣ୍ଠ ଧନଆଁଙ୍କୁ ଖୋଜ ଆଣିବା ପାଇଁ ଖେମୀ ଚାଲିଗଲା । ଦୁଇ ଘଣ୍ଟା ପରେ ନର୍ଦ୍ଦମା-ବିଲରେ ଲୋଟୁଥିବା ଅବସ୍ଥାରେ ପାଇ ଧୀରେଧୀରେ ଉଠେଇ ଘରକୁ ଆଣିଲା । ତା ପରଦିନ ଧନଆ ନିମୋନିଆରେ ଆକ୍ରାନ୍ତ ହେଲା । ଖେମୀ ପୁଣି ମାନସିକ କଲା । ଅନୁଭବୀଙ୍କୁ ଡାକି ପଚାରିଲା, ସେମାନେ ଯାହା କହିଲେ ସେ ଅନୁସାରେ ମାନସିକ କଲା, ପରନ୍ତୁ ଧନଆ ଆଉ ଭଲ ହେଲା ନାହିଁ । ଖେମୀ ବିଧବା ହୋଇଗଲା ।

ବୈଧବ୍ୟର ଶୋକଗ୍ରସ୍ତା ତାର ସମସ୍ତ ଜୀବନକୁ ଆଚ୍ଛାଦିତ କରି ଦେଲା । କିନ୍ତୁ ସବୁଠାରୁ ଅଧିକ ଦୁଃଖ ହେଲା ଯେ ଧନଆ ମାନସିକ ପୂର୍ଣ୍ଣ ନ କରି ଚାଲିଗଲା । କେ ଜାଣେ ତା ଉପରେ କି କି ଦୁଃଖ ଘଟିବ, ଏହି ଚିନ୍ତା ସବୁବେଳେ ତାକୁ ବ୍ୟାକୁଳ କରୁଥାଏ । କିନ୍ତୁ କୌଣସି ଉପାୟ ଜଣା ପଡ଼ୁ ନ ଥାଏ ।

ଖେମୀ ଦିନେ ଋତସେଣ୍ଟରରେ ଝାଡ଼ୁ ଲଗାଉଥାଏ, ସେ ଆଉ ଗୀତ ବୋଲେ ନାହିଁ । ଖରକୁ, ଖରକୁ ଧନଆର ମାନସିକ କଥା ବିଚାର କରିବାକୁ ଲାଗିଲା । ଏତିକିବେଳେ ସାମନା ଚବୁତରା ପାଖରେ ଗୋଟିଏ ବ୍ରାହ୍ମଣକୁ ଦେଖିଲା—କପାଳରେ ତ୍ରିପୁଣ୍ଡ୍ର ମଝିରେ ଚନ୍ଦ୍ରାକାର ରେଖା ଓ ନାକ ଉପରେ ପତଳା କଳା ରେଖା ଟଣା ହୋଇଥାଏ । ମୁଣ୍ଡରେ ପାଟ ବର୍ଷିଣୀ ପଗଡ଼ି, ହାତରେ କଳ୍ପ ବଡ଼ ଦାନା ବିଶିଷ୍ଟ ରୁଦ୍ରାକ୍ଷମାଳା ଗୁଡ଼ା ହୋଇଥାଏ ଗଳାରେ ମଧ୍ୟ ରୁଦ୍ରାକ୍ଷମାଳା । ଜ୍ୟୋତିଷ ମହାଶୟ ଚବୁତରା ସଫା କରି ଆସନ ବିଛାଇଲେ । ଆଗରେ ଗୋଟିଏ ପଟା, ପେନ, ହାତ ରେଖାଦର୍ଶନ ଚିତ୍ର, ପାଞ୍ଜି ଓ ଜ୍ୟୋତିଷି ପୋଥି ବ୍ୟବସ୍ଥିତରୂପେ ସଜାଇ ରଖିଲେ । ଖେମୀ ସେଇ ଆଡ଼କୁ ଅଗ୍ରସର ହେଲା । ତାର ଆସିବା ଦେଖି ସନାତନ ସଂସ୍କାର ଯୋଗୁଁ ଜ୍ୟୋତିଷ ମହାଶୟ ଦୂର ରହିବାକୁ କହିଲେ । ଖେମୀ କହିଲା—"ମହାପ୍ରଭୁ ମୋର ପ୍ରଶ୍ନ ପଚାରିବାର ଅଛି ।" "ତା ହେଲେ ଚାରିଅଣା ତଳେ ଥୋଇ ଦେ ।" ଜ୍ୟୋତିଷ ମହାଶୟଙ୍କ ପାଇଁ ଖେମୀର ଛୁଆଁ ଅପବିତ୍ର କିନ୍ତୁ ପଇସା ଅପବିତ୍ର ନୁହେ । ଖେମୀ ସୁଙ୍କି ରଖି ଦେଲା । ମହାଶୟ ପାଣି ଛିଞ୍ଚିକି ପଇସା ଉଠେଇ ନେଲେ । ପରେ କହିଲେ 'ଏଥର କହ ।'

"ମହାପ୍ରଭୁ ଯଦି କାହାର ସ୍ୱାମୀ ମାନସିକ ପୂର୍ଣ୍ଣ କରିବା ପୂର୍ବରୁ ମରିଯାଏ ଏବଂ ତାର ସ୍ତ୍ରୀ ଯଦି ସେହି ମାନସିକ ପୂର୍ଣ୍ଣକରେ ତେବେ ତାର ସୁଫଳ ସ୍ୱାମୀ ପାଇ ପାରିବ କି ? ଠିକ୍ ଠିକ୍ ଦେଖି କହିବ ।"

ଅଙ୍ଗୁଳିର ପବ ଗୁଡ଼ିକ ଗଣି ଜ୍ୟୋତିଷ ମହାଶୟ କହିଲେ—ହଁ ।"

"ଆସୁ ମହାପ୍ରଭୁ," କହି ଖେମୀ ଯେତେବେଳେ ଯିବାକୁ ଉଦ୍ୟତ ହେଲା ଜ୍ୟୋତିଷ ଫେରେ ଡ଼ାକ କହିଲେ—"କିନ୍ତୁ ପତ୍ନୀ ଯଦି ପୁନର୍ବିବାହ କରେ ତା ହେଲେ ସୁକୃତ ଫଳିବ ନାହିଁ ।" ଖେମୀ ନମସ୍କାର କରି ଚାଲିଗଲା ।

ଖେମୀ ବର୍ତ୍ତମାନ ମାନତା ପୂର୍ଣ୍ଣ କରିବା ପାଇଁ ପଇସା ଜମେଇବାକୁ ଲାଗିଲା । ଖେମୀର ଯୌବନ ତ ଚାଲିଗଲା କିନ୍ତୁ ସୌନ୍ଦର୍ଯ୍ୟରେ ଲେଶମାତ୍ର ପରିବର୍ତ୍ତନ ହୋଇ ନ ଥାଏ । ଅନେକ ମେହେନ୍ତର ତାକୁ ପୁନର୍ବିବାହ କରିବା ପାଇଁ କହିଲେ । ସେ ସବୁରି ସେ ଏକମାତ୍ର ଉତ୍ତର ଦିଏ—ଧନଆର ମାନସିକ ପୂର୍ଣ୍ଣ ନ କରିବା ଯାଏ ମୁଁ ଦ୍ୱିତୀୟ ବିବାହ କରି ପାରିବି ନାହିଁ । ଏ କଥା ଶୁଣି ଗୋଟିଏ ମେହନ୍ତର ମାନତା ପୂର୍ଣ୍ଣ କରିବା ପାଇଁ ନଗଦ ଟଙ୍କା ଦେବାକୁ ରାଜି ହେଲା, କିନ୍ତୁ ଖେମୀ କହିଲା ଯେ ସେ ପୂର୍ଣ୍ଣ ନିଶ୍ଚୟ କରିବ । ସ୍ୱୋପାର୍ଜିତ ଧନରୁ ହିଁ ମାନସିକ ପୂର୍ଣ୍ଣ କରିବ ।

ପାଞ୍ଚ ସାତ ବର୍ଷ ପରେ ସେ ମାନସିକ ପୂର୍ଣ୍ଣ କରି ପାରିଲା । ଜଣେ ମେହନ୍ତର ତାକୁ ଘରେ ରଖିବାକୁ ଚାହିଁଲା । କିନ୍ତୁ ସେ ଉତ୍ତର ଦେଲା, "ନା, ନା, ଆଉ ଏ ବୟସରେ ଜଞ୍ଜାଳରେ ପଡ଼ିବି କାହିଁକି ?

* * *

# ମା କୋଳରେ

ଶ୍ରୀ ସୁନ୍ଦରମ୍

ନଈକୂଳ ଉଚ୍ଚ ପଠାରେ ଗାଡ଼ିଏ ଥାଏ । ତାର ଗୋଟିଏ ସୀମାରେ ଥିବା ସାହିରୁ ତିନୋଟି ମନୁଷ୍ୟ ବାହାରିଲେ—ଦୁଇଟି ପୁରୁଷ ଓ ଗୋଟିଏ ସ୍ତ୍ରୀ । ପୁରୁଷ ଦୁହେଁ ଆଗେ ଆଗେ ଚାଲୁଥାନ୍ତି ।

"ଶବୁ ! ଆସିବୁ, ଆସିବୁ ଭଉଣୀ ! ଟିକଏ ସମ୍ଭାଳିକରି ଯିବୁ ! ନିଜ ଶରୀରର ଯତ୍ନ ନେଉଥିବୁ ଭଉଣୀ ! —ସାହି ପଡ଼ିଶା ସ୍ତ୍ରୀମାନେ ବିଦା କରି କହୁଥାନ୍ତି ।

ଶବୁର ଶ୍ୱଶୁର ଓ ସ୍ୱାମୀ ତାକୁ ନେବାକୁ ଆସିଥିଲେ । ସେ ସେମାନଙ୍କ ସହ ଶ୍ୱଶୁରାଳୟକୁ ଯାଉଥିଲା । ମା ଘରୁ ବିଦା ନେବାବେଳେ ମନେହେଲା ଗୋଡ଼ ଯେପରି ଚାଲିବାକୁ ମୋଟେ ରାଜି ନୁହନ୍ତି । ବାପଘର ଲୋକେ, ସାହିବାଲା ତଥା ନିଜ ସଖିମାନଙ୍କଠାରୁ ବିଦାୟ ନେଇ ଯାଉଁ ଯାଉଁ ସେ ଟିକଏ ପଛରେ ପଡ଼ିଗଲା । ରାସ୍ତାରେ ମୋଡ଼ ପଡ଼ିବା ଯୋଗୁଁ ସ୍ୱାମୀ ଓ ଶ୍ୱଶୁର ଆଖିରୁ ଅଦୃଶ୍ୟ ହୋଇଗଲେ । ସେମାନଙ୍କ ସାଥି ଧରିବା ପାଇଁ ସେ ଶୀଘ୍ର ଶୀଘ୍ର ଚାଲିବାକୁ ଲାଗିଲା ।

ଗୋଟିଏ ସଖି ମୋଡ଼ ପର୍ଯ୍ୟନ୍ତ ଗୋଡ଼ାଇବାକୁ ଗଲା ଏବଂ ସେହି ମୋଡ଼ରେ ଠିଆ ହୋଇ ରହିଲା । ହାତ ଉପରକୁ ଟେକି ବିଦା ଦେଇ କହିଲା—"ଆସିବୁ, ଆସିବୁ" ଓ ତା ଆଡ଼କୁ ଚାହିଁ ରହିଲା । ହଠାତ୍ ଖୁବ ଜୋରରେ ଚିତ୍କାର କଲା—"ମା ଲୋ !"

ସାହି ଲୋକେ ଚହଁକି ଉଠିଲେ—"କଅଣ ହେଲା ? କଅଣ ହେଲା ?"

"ବାଲେଇ ଶବୁର ରାସ୍ତା କାଟିଚାଲିଗଲା ।"

ବର୍ତ୍ତମାନ ଶବୁକୁ ଫେରେଇ ଆଣିବା ସମ୍ଭବ ନୁହେଁ କିମ୍ବା ସେଠି ଅଳ୍ପ ସମୟ ପାଇଁ ଠିଆ ହୋଇ ରହ ବୋଲି ମଧ୍ୟ କହି ହେବ ନାହିଁ

"ମାତା ଅମ୍ବା ମଙ୍ଗଳ କରନ୍ତୁ !" କହି ସମସ୍ତେ ନିଜ ନିଜ କାମରେ ଲାଗିଲେ ।

ଶବୁ ଖୁବ ଚଞ୍ଚଳ ଚାଲିବାକୁ ଲାଗିଲା । ଗାଁ ଛାଡ଼ିବା ମାତ୍ରେ ରାସ୍ତାଟି ଗୋଟିଏ ଝୋଇ ଭିତର ଦେଇ ଯାଇଥିଲା । ଝୋଇରେ ଓହ୍ଲାଇ ବାପ ପୁଅ ଦୁହେଁ ଠିଆ ଠିଆ ଚିଲମ ଟାଣୁଥାନ୍ତି ଓ ମୁହଁ ବାଟେ ଧୂଆଁ ଉଗାଳୁଥାନ୍ତି । ସେମାନଙ୍କୁ ଦେଖି ଶବୁ ଧିରେ ଧିରେ ଚାଲିଲା ।

ଦୁଇ ପ୍ରହର ସମୟ । ଝୋଇର ହିଡ଼ ଉପରୁ ନଈ ପାଣି ଝଟକିଲା ପରି ଦିଶୁ ଥାଏ । ବଢ଼ି ଖସି ଆସିଥିଲା । ପାଣି ଓହ୍ଲେଇ ପଡ଼ିବା ଯୋଗୁଁ କୂଳର କାଦୁଅ ସ୍ୱଚ୍ଛ ସ୍ଫଟିକ ପଥର ଭଳି ଝଟକୁ ଥାଏ । କୌଣସି ଯାତ୍ରୀର ପଦ ଚିହ୍ନ ସେ କାଦୁଅକୁ ଦୁଇ ଭାଗରେ ଭାଗ କରି ଦେଇଥିଲା । ଶବୁ ଆଖି ଉପରେ ହାତ ଆଡ଼ୁଆଳ କରି ଚାହିଁଲା । ସୂର୍ଯ୍ୟ କିରଣ ପଡ଼ି ଝଲସି ଯାଉଥିବା ଆଖିରେ ସମ୍ମୁଖସ୍ଥ ଗାଁର ଶ୍ୟାମଳ ସୀମାରେଖାକୁ ଚାହିଁବାକୁ ଲାଗିଲା ।

ଶ୍ୱଶୁରାଳୟ ! ତାର ହୃତକମ୍ପ ହେଲା । ସେ ଆଖି ଖୋଲିଲା, ପୁଣି ବନ୍ଦ କଲା । ତଳେ ଶ୍ୱଶୁର ଠିଆ ହୋଇଛନ୍ତି—ଏକଥା ମନେ ପଡ଼ିବା ମାତ୍ରେ ଶୀଘ୍ର ଫୁଲଫୁଲିଆ ଶାଢ଼ୀଟି ଓଟାରି ଓଢ଼ଣା ଟାଣିଲା । ତା ଦୃଷ୍ଟି ନିଜ ଗୋଡ଼ ଚାରିପଟେ ବୁଲିବାକୁ ଲାଗିଲା । ରାସ୍ତାକୁ ଲାଗି ବାଡ଼ଟିଏ ଥାଏ । ସେଥିରେ କନ୍ଥାରି, ବରକୋଳି ଓ ସୀତାଫଳ ଆଦି ଗଛ ଲଟେଇ ହୋଇ ରହିଥିଲା । କନ୍ଥାରିରେ ନାଲି—ଓ କଳା କଳା କନ୍ଥାରି ଝୁଲୁଥାଏ । ସୀତାଫଳ ଏକଦମ କଞ୍ଚା ଥିଲା । "ଘରେ ପାଚିଯିବ"—ଏପରି ଭାବି ସେ ସୀତାଫଳ ତୋଳିବାକୁ ହାତ ବଢ଼ାଇଲା । ଏତିକିବେଳେ ତକ୍ର ସ୍ୱାମୀଙ୍କର ଡାକ ଶୁଣାଗଲା ।

"ହଇଲେ, ଆ ଆ ।"

ସେ ଚମକି ପଡ଼ିଲା । କନ୍ଥାରି କଣ୍ଟା ତା କହୁଣୀରେ ବାଜିଲା । ସେ ଧୀରେ ହାତ ବାହାରକୁ ଟାଣି ଆଣିଲା ।

ସେ ଅଳ୍ପ ବାଟ ଚାଲିଛି । ଆଗରେ ବାଡ଼ରେ କାଇଁଚ ଫଳ ପେଛା ପେଛା ହୋଇ ଥାଏ ।।

"ସେ ପାଟି କଲେ କରନ୍ତୁ ପଛେ, କାଇଁଚ ଫଳ ନନେଇ ମୁଁ ଯିବି ନାହିଁ,"—ଏତିକ କହି ଝଅ ବାଡ଼ରେ ହାତ ପୁରାଇ ଦେଲା ।

ଶାମୁକାରେ ମୋତି ରହିଲା ଭଳି କାଇଁଚ ଫଳ ପ୍ରକୃତିଦତ୍ତ ଗର୍ଭରେ କାଇଁଚ ସଜାଇ ରଖିଛି । ଦୁଇ ଗୁଚ୍ଛ ପେଣ୍ଡା ଫଳ ତୋଳି ଅଣ୍ଟିରେ ବାନ୍ଧିଲା । ଠିକ୍ ଏତିକି ବେଳକୁ ତଳୁ ପୁଣି ଡାକ ଶୁଣାଗଲା ।

"ଆସୁଛି ତ କାହିଁକି ପାଟି କରୁଛ ?" ସେ ଉତ୍ତର ଦେଲା, ଓ ଶୀଘ୍ର ଶୀଘ୍ର ପାଦ ବଢ଼େଇଲା । ଗୋଡ଼ରେ ଥିବା ଜୁତାରୁ ଧୂଳି ଉଡ଼ୁଥାଏ । ଗୋଡ଼ରେ ପିନ୍ଧିଥିବା ଝୁଦା କଡ଼ାରୁ ଟିକିଏ ଖନଖନ ଶବ୍ଦ ହେଲା । ଏକାବାରେ ନୂଆ ଘାଘରା ଓ ନୂଆ ଓଢ଼ଣୀର ସର୍ ସର୍ ଶବ୍ଦ ଶୁଣାଗଲା । ଓଢ଼ଣୀର ପଣତ ଠିକ୍ କରିବା ପାଇଁ ସେ ହାତ ଯେମିତି ଉପରକୁ ଟେକିଛି ହାତରେ ଖଡ଼ୁ କାଚ ଚୁଡ଼ି ସହ ବାଜି ଝଣଝଣ ଶବ୍ଦ ହେଲା । ତାର ରେଶମୀ ଚୁଟି କଡ଼କଡ଼େଇଲା । ଜରି କାମହୋଆ ଚୋଲିର ହାତ ସୂର୍ଯ୍ୟ କିରଣରେ ଝଲସି ଉଠିଲା । କଜ୍ଜଳ-ନୟନରେ ଏଣେ ତେଣେ ଟିକିଏ ଚାହିଁଲା ଓ ହଠାତ ଠିଆ ହୋଇଗଲା ।

ବାଟରେ ଚଟିକା ଗୋବର ଦେଖିଲା । ଆହା କେଡ଼େ ସୁନ୍ଦର ! ଧାନ ଗଦା ପରି । ସେ ମନେ ମନେ ଭାବିଲା—"କାହାର ଗୋଟିକିଆ ମଇଁଷି ଗୋବର କରିଥିବ । ନ ହେଲେ ମୋ ସୌତୁଣୀମାନେ ପ୍ରାଣ ଦେଇଥାନ୍ତେ ?" ସେହି ଗୋବରକୁ ନେଇ ଘରେ ଥୋଇବା ପାଇଁ ମନ ବ୍ୟାକୁଳ ହୋଇ ଉଠିଲା । ସେ ଏହି ରାସ୍ତାରୁ ଅନେକ ଥର ଗୋବର ଉଠେଇଛି । ଆଜି ମଧ୍ୟ ସେ ତା ଉପରେ ମାଟି ନ ପକାଇ ରହିପାରିଲା ନାହିଁ । ସେ ଜୁତାରେ ଗୋବରକୁ ଆଡ଼େଇ ଦେଇ ତା ଉପରେ ମାଟି ପକାଇଲା । ତାର ପୂର୍ଣ୍ଣ ବିଶ୍ୱାସ ଯେ ମାଟିରେ ଘୋଡ଼ାଇ ହୋଇଥିବା ଗୋବର କେହି ଉଠାଇବେ ନାହିଁ । ଅଳ୍ପ ଦୂର ଗଲା ପରେ ମନେ ମନେ ଭାବିଲା—ବ୍ୟର୍ଥରେ କାହିଁକି ମାଟି ପକାଇଲି ? ଆଜି କାହାର କାମରେ ଲାଗନ୍ତା ।

ପୁଣି ତଳୁ ଡାକ ପଡ଼ିଲା । ସେ ଶୀଘ୍ର ପାହୁଣ୍ଡ ପକାଇଲା ଓ ଖାଇକୁ ଯାଉଥିବା ରାସ୍ତାରେ ଧୂଳି ଉଡ଼େଇ ଓହ୍ଲାଇ ପଡ଼ିଲା । ଏହି ପ୍ରକାର ଉଡ଼ୁଥିବା ଧୂଳି ପଠା ଉପରକୁ ଚାଲିଗଲା ସତେ ଯେମିତି "ଶବ୍ଦ ଚାଲିଗଲା" କହି କହି ।

ଖାଇରେ ଓହ୍ଲେଇବା ପରେ ସମତଳ ଭୂମି ଦେଇ ରାସ୍ତା ଯାଇଛି । ନଦୀର ଆଦ୍ରତା ଯୋଗୁଁ ରାସ୍ତା ଧୂଳି ଦବି ଯାଇଛି । ବାପ-ପୁଅ ଦୁହେଁ

ଟେଢ଼ିର ଅଚ୍ଛଭୋଗକୁ ଆଗକୁ ଟାଣି ଆଣି, ସେଥିରେ ଛତାର ଅଗ୍ରଭାଗ ଦୁର କରି ଆଗକୁ ଚାଲିଛନ୍ତି । ଶବୁ ଜୋତାରୁ ଫଟ ଫଟ ଶବ୍ଦ ବାହାରୁଥାଏ । ଶବୁ ଏଣେ ତେଣେ ଦୃଷ୍ଟି ଫେରାଉ ଥାଏ । ଖାଇର ଦୁଇପଟେ ଉଚ ଉଚ ପଠା । ସେଥିରେ କେଉଁଠି ଗୋଟେ ଦୁଇଟି ଛେଳି ଚରିବା ଦେଖା ଯାଉଛି । ଏବ୍ବ ଟିପ ଭୂଇଁର ଅନ୍ୟ ଗୋଟିଏ ଫାଳ ଦେଖାଯାଉଛି ଓ କଅଁଳ ସବୁଜ ବର୍ଣ୍ଣ ଘାସରେ ଘୋଡ଼ାଇ ହୋଇ ଗୋଟିଏ ଅଧେ ଷ୍ଟେଟ ରାସ୍ତା ଆଙ୍କବାଙ୍କ ହୋଇ ଅନେକ ଦୂରରେ ଲୋପ ହୋଇଛି । ଏଇଷ୍ଟେଟିଆ ରାସ୍ତାର, ଏବ୍ବ ଟିପ ଭୂଇଁରେ ସେ ଅନେକ ଥର ଗୋରୁ ଚରାଇଛି । କୌଣସି ଗୋଟିଏ ଗଛ ଛାଇ ତଳେ ବସି କଣ୍ଟା ବଣରୁ ବଛା ବଛା ବରକୋଳି ଆଣି ମଉଜରେ ଖାଇଛି । "ଶାଶୁ ଘରକୁ ନ ଗଲେ କେଡ଼େ ଭଲ ହୁଅନ୍ତା! ! ସାତଗ ଟ୍ରେଲ ପିନ୍ଧି ବନରାନ୍ତ ବୁଲୁଥାନ୍ତା ।"

ଶବୁକୁ ନୂଆ ଲୁଗା ଓ ଓଜନଆ ରୂପା ଅଳଙ୍କାର ଭାର ସ୍ୱରୂପ ଜଣାଗଲା ।

"ଟିକଏ ମଠେଇ ଚାଲ... " ପଛରୁ ଡାକ କହିଲା । ବାପ ପୁଅ ଦୁହେଁ ଶୁଣି ନ ଶୁଣିଲା ପରି ଆଗକୁ ଚାଲିଥାନ୍ତି ।

ଦୁଇ ତିନୋଟି ବଲ ମାପ ରାସ୍ତା ପାର କଲାପରେ ନଦୀକୂଳ ବାଲି ଆରମ୍ଭ ହେଲା । ଚାରିଆଡ଼େ କେବଳ ବାଲି । ତାର ଗତି ମନ୍ଥର ହୋଇ ଆସିଲା । ସେ ମୁଣ୍ଡ ଉପରୁ ଓଢ଼ଣାଟି କାଢ଼ିଲା । ନଦୀର ଶୀତଳ ମଳୟ ସ୍ପର୍ଶରେ ଶ୍ରମବିନ୍ଦୁ ଶୁଖିଗଲା । ତା ମୁହଁରେ ପ୍ରସନ୍ନତା ଓ ମନ୍ଦହାସ ଫୁଟି ଉଠିଲା । ନଥର ଛଅଟି ଯାକ ପଥରରେ ସୂର୍ଯ୍ୟ ନିଜ ପ୍ରତିବିମ୍ବ ଦେଖୁଥାଏ ।

ସେ ଆଖପାଖ ଦୃଷ୍ଟି ବୁଲାଇଲା । ଖାଇରୁ ବାହାରିବା ପରେ ଦୁଇ ପଟେ ଯେତେ ଦୂର ଦୃଷ୍ଟି ପଡ଼ୁଛି କେବଳ ବାଲି । ବାଲିରେ ମନୁଷ୍ୟ ତଥା ଗୋରୁଙ୍କ ପଦଚିହ୍ନ ପଡ଼ି ଷ୍ଟେଟ ଷ୍ଟେଟ ଖାଲ ସୃଷ୍ଟି କରିଥାଏ ଏବଂ ଷ୍ଟେଟ ଷ୍ଟେଟ ଢେଉର ସଂସାର ଗଢ଼ୁଥାଏ । ଏହି ବାଲି ! ଜହ୍ନ ରାତିରେ ସାତ ତାଳି ଖେଳ ଖେଳିବାକୁ ସମସ୍ତେ ଆସୁ ଓ କେତେ ଦୌଡ଼ୁ, ଦୌଡ଼ୁ...

ତା ଆଖିରୁ ପାଣି ଗଡ଼ିଗଲା । ଆରେ, ଆଜ କାହିଁକି ସବୁ କଥା ମନେ ପଡ଼ୁଛି ? ତା ମନ ଦ୍ୱିଧାରେ ପଡ଼ିଲା । ସେ ଶାଶୁ ଘରକୁ

ପିବା ପାଇଁ ଚ୍ଛୁଁନାହିଁ, କଅଣ ଏଥି ପାଇଁ ? ସେ କେତେ ବର୍ଷ ପରେ ଶ୍ୱଶୁରାଳୟ ଯାଉଛି ।

ବାଲିରେ ତା ପାଦ ଠେକିଲା । ଜଣାଗଲା ଯେମିତି ପାଦର ସମସ୍ତ ଶକ୍ତି ଉଭେଇ ଗଲା । ଅଗେ ତ ଏପରି ହେଉ ନ ଥିଲା ? ଗ୍ରୀଷ୍ମରେ ଗ୍ରୀଷ୍ମରେ ବାଲିରେ ମଧ୍ୟ ସଖି-ସାଙ୍ଗ ଗହଣରେ ସେ ଘୋଡ଼ା ଚରି ବୁଲୁଥିଲା । ସେ ଗୋଡ଼ରୁ ଯୋତା କାଢ଼ି ଗଣ୍ଠିଳିରେ ବାନ୍ଧିଲା ଓ ଗଣ୍ଠିଳିଟି ମୁଣ୍ଡରେ ରଖିଲା ।

ବାଲି ତାତି ଗଲାଣି । ପାଦ ଅଳ୍ପ ପୋଡ଼ି ଯାଉଥାଏ, କିନ୍ତୁ ତା'ଠାରୁ ବେଶୀ ମନ ପୋଡ଼ି ଯାଉଥାଏ । ଓଃ ସେଇଠି ପାଣି ଦିଶୁଛି ଏଥର ପାଦ ଶୀତଳ ହେବ । କିନ୍ତୁ ଏହି ଅଶାନ୍ତ ମନକୁ ଶାନ୍ତି ମିଳିବ କିପରି ?

ବାଲିକୁ ମାଡ଼ ଚଳଟି ସେ ଆଗକୁ ଗଲା । ହେଇ ପାଣି ! ଓ ସେଇଠି ରହିଲା ପାଣି ! ପାଣି ପାଇବା ପାଇଁ ତା ମନ ବ୍ୟାକୁଳ ହୋଇ-ଗଲା । ଏତେ ନିକଟରେ ପାଣି ଦେଖା ଯାଉଛି ତେବେ ସୁଦ୍ଧା ନିକଟକୁ ଆସୁନାହିଁ, କାହିଁକି ? ଅମେ ଯେତେବେଳେ ଖେଳୁଥାଉ, ଏକା ଦୌଡ଼କେ ପାଣି ନିକଟରେ ପହଞ୍ଚୁଥିଲୁ ।

ବାପ-ପୁଅ ଦୁହେଁ ପାଦେ ପାଦେ ପାଣିରେ ଯାଇ ଠିଆ ହୋଇ ରହିଲେ ଏବଂ ତା ଆଡ଼କୁ ଚାହିଁଲେ ! ସେ ଦୁହେଁ ଯେତେବେଳେ କାଦୁ-ଅରେ ଚାଲୁଥାନ୍ତି, ତାଙ୍କ ଦେହ ମାଟି ଚଳଟଥିବା କୁମ୍ଭାରର ଦେହପରି ଦୋହଲୁ ଥାଏ ।

ମୁହଁ ଖୋଲି ଆସୁଥିବା ଶବୁ ଓଢ଼ଣା ଟାଣିଲା । ଜଣାଗଲା ଯେମିତି କିଛି ସମୟ ପାଇଁ ଆଖି ଆଗର ଦୁନିଆ ବନ୍ଦ ହୋଇଗଲା । କଳା କାଦୁ-ଅର ସୌନ୍ଦର୍ଯ୍ୟ, ଝଟକୁ ଥିବା ପାଣି—ସବୁ କିଛି ସମୟ ପାଇଁ ଅଦୃଶ୍ୟ ହୋଇଗଲା । ଆହା ! ତା ପାଦତଳ ଥଣ୍ଡା ଜଣାଗଲା, ପାଦତଳ ଭୂଇଁ ହଲିଲା ପରି ଜଣାଗଲା । ଏଥର କାଦୁଅ ଆରମ୍ଭ ହେଲା ।

ଶବୁ ଆଖି ଖୋଲିଲା । କାଲେ ଗୋଡ଼ ଖସିଯିବ ? ଆଠ ଦଶ ଅଙ୍ଗୁଳି ତଳ ଟାଣ ଭୂଇଁର ଆଶ୍ରାରେ ଚାଲିବାକୁ ହେବ । କିନ୍ତୁ ଯେତେବେଳେ ସେ ଖେଳୁଥିଲା ଗାଁ ପିଲାଙ୍କ ସହ ଜାଣି ବୁଝିକା ଖସୁଥିଲା । କିଏ ଗୁଡ଼ାଏ ପରେ କାଦୁଅରେ ପଡ଼ିଲା ଚିହ୍ନ କିଏ ରଖିବ, ଏହି କଥା

ନେଇ ଗାଁ ପିଲାଙ୍କ ମଧ୍ୟରେ ବାଜି ଲାଗେ । ଆଜି ମଧ୍ୟ ସେ ସର୍ବପ୍ରଥମ ପାଦଚିହ୍ନର ଏହି ରେଖାଟି ସୃଷ୍ଟି କରିଛି, ସେ କେତେ ଆନନ୍ଦିତ ହୋଇ ନ ଥିବ ! ଆଉ ଏ ବାପ ପୁଅ ଦୁହେଁ କାଦୁଅକୁ ଗୋଡ଼ରେ ମାଡ଼ି ଚକଟି ସବୁ ଖରାପ କରିଦେଲେ । ମନରେ ସାମାନ୍ୟ ତିରସ୍କାର ଭାବ ଜାଗିଲା । ମୋର କାଦୁଅ ଖରାପ କରିଦେଲେ ! ଏଇ ଘରର ଲୋକେ ଏମିତି ! ଛି...ର !

"ଏ ପୋଡ଼ାମୁହାଁ ଦୁଇଜଣ ମହାସାଗରର ପାଣି ମୁଣ୍ଡରେ ନ ମାରି ପାଣିରେ ପଶିଗଲେ !"

ବାପ-ପୁଅ ଦୁହେଁ ଅଣ୍ଟୁଏ ଅଣ୍ଟୁଏ ପାଣି ମାଡ଼ି ଚକଟି ପ୍ରାୟ ଅଧା ବାଟ ଚାଲି ଯାଇଥିଲେ ।

ଶବୁ ପାଣି ପାଖକୁ ଆସି ଠିଆ ହୋଇ ରହିଲା । ଆଗକୁ ମୁଣ୍ଡ ନୁଆଇଁ ଅଞ୍ଜୁଳାଏ ପାଣି ମୁଣ୍ଡରେ ଢାଳିଲା ଓ କହିଲା—"ମହାସାଗର ମା, ମଙ୍ଗଳ କରିବୁ । ତୁ ହେଉଚୁ ମୋର ମା ।" ଏତିକ କହି ପାଣିରେ ଗୋଡ଼ ଦେଲା ।

କଳ କଳ ଧ୍ୱନିରେ ପାଣି ତା ପାଦ ସହ ଖେଳ ଖେଳ ପ୍ରବାହିତ ହେବାକୁ ଲାଗିଲା । କି ସୁନ୍ଦର ଶୀତଳ ସ୍ପର୍ଶ ! କି ମଧୁର ଶିହରଣ !

"ମହାସାଗର ମା ! ମରିବ ତୋର କୋଳରେ । ଦିନେ ନିଶ୍ଚୟ ମୁଁ ତୋର କୋଳରେ ଫେରି ଆସିବି, ନିଶ୍ଚୟ ଫେରି ଆସିବି, ସେତେବେଳେ ତୁ ମୋତେ ତୋ ଘରକୁ ନେଇ ଯିବୁ ···। ଆରେ ରେ ଛି, ଛି, ଆଜିପରି ଶୁଭ ଦିନଟାରେ ଏପରି ଅଲକ୍ଷଣା ବିଚାର ଉଠୁଚି କାହିଁକି ? କିଛି ସମୟ ପାଇଁ ତା ହୃଦୟ ଥରି ଉଠିଲା ।

ଗୋଳିଆ ପାଣିରେ ତାର ଅସ୍ପଷ୍ଟ ପ୍ରତିବିମ୍ବ ଦେଖାଗଲା । ତାର ଭିଡ଼ିଥିବା କଚ୍ଛା, ହାତରେ ସୁନ୍ଦର ଫୁଲ ଅଙ୍କା ହୋଇଥିବା ଚୋଳି, ଘୋଡ଼େଇ ଥିବା ଓଢ଼ଣୀ ଓ ତାର ସୁଡୌଲ ଝଟକୁଥିବା ଶ୍ୟାମଳ ଶରୀର—ଏହି ସବୁ ନଦୀ ପରିଷ୍କାର ଦେଖିପାରୁ ନ ଥିଲା । ତେଣୁ ବୋଧହୁଏ ଉଦାସୀନ ହୋଇ ବହି ଯାଉଥାଏ । ହଁ, ତାର ମନେ ପଡ଼ିଲା, ପାଣି ଯେତେବେଳେ ସ୍ୱଚ୍ଛ କାଚ ପରି ନିର୍ମଳ ହୋଇଯାଏ ସେତେବେଳେ ସେ ତା ସଖୀଙ୍କ ଗହଣରେ ଆପଣାର ସ୍ପଷ୍ଟ ପ୍ରତିବିମ୍ବ ଦେଖେ ।

ପିଲାଦିନଆ ସାଙ୍ଗଙ୍କ କଥା ମନେ ପଡ଼ିଲା । ଗୋଟିଏ ସଖୀ ତ ମୋ ଶ୍ୱଶୁର ଘର ଗାଁରେ ହିଁ ବିବାହ କରିଚି । ଆଉ ଏଇନେ ତ ତାର

ପିଲା ମଧ୍ୟ ଅଛି । କେବେ ଯାଇ ମୁଁ ତାକୁ ଖେଳାଇବ ! ତା ହୃଦୟରେ ଆନନ୍ଦ ତେଉ ଉଠ ବାକୁ ଲାଗିଲା ଓ ଠିକ୍ ସେତିକବେଳେ ନଜ ପେଟରେ ମଧ୍ୟ କଛି ହଲାଲା-ଚଳଲା ପର ଜଣାଗଲା । ଅଳ୍ପ ବଢ଼ ହୋଇଥିବା ପେଟରେ ହାତ ରଖି କ୍ଷଣକ ପାଇଁ ପାଣିରେ ଠିଆ ହୋଇ ରହିଲା ।

ଜାଣେ ନା କେଉଁ ଦିଗରୁ ବାଳକର କାନ୍ଦ୍ଣୀ ତାକୁ ଶୁଣାଗଲା । ସେ କାନ ଡେରି ଶୁଣିବାକୁ ଚେଷ୍ଟା କଲା । ଆଖ-ପାଖ ଜନଶୂନ୍ୟ ନର୍ଜନ ସ୍ଥଳ । ନଦୀର ପାଞ୍ଚ କୋଶ ବ୍ୟାପୀ କୂଳ ଅଞ୍ଚଳରେ ଗଛ-ପତ୍ର, ଘର—ଦ୍ୱାର କାହାର ନାମଗନ୍ଧ ମଧ୍ୟ ନାହିଁ । ତେବେ ସୁଦ୍ଧା ବାଳକର କାନ୍ଦଣା ବରବର ଶୁଣା ଯାଉଥାଏ ।

"କେ ଜାଣେ କଅଣ ହେବ ? ଅମ୍ବା ମାତା କଲ୍ୟାଣ କରିବୁ"—କହି ସେ ଆଗକୁ ଗଲା ।

ସ୍ଥିର ପାଣି ଗଭୀର ହେବାକୁ ଲାଗିଲା ଓ ପ୍ରବାହ ମଧ୍ୟ ବଢ଼ିବାକୁ ଲାଗିଲା । ସେ ଘାଘରାକୁ ଉପରକୁ ଟେକ ଗୋଡ଼ ଦୃଢ଼ତାର ସହ ବସେଇ ବସେଇ ଚାଲିଲା । ତଳେ କଛି ବାଜିଲା ଓ ତା ଗୋଡ଼ ଖସି ଗଲା । ଆରେ ପଡ଼ିଗଲା, ଆରେ ବହିଗଲା । ଆଉ ସେ ବୁଢ଼ାଗୁଡ଼ାକ କୂଳରେ ଯାଇ ଠିଆ ହୋଇଛନ୍ତି । ତାଙ୍କ ଘରକୁ ଯିବା ଅପେକ୍ଷା ଏହି ମହାସାଗରରେ ବୁଡ଼ିଗଲେ ମନ୍ଦ ନୁହେଁ । ହଠାତ୍ ଯଦି ବଢ଼ି ଆସନ୍ତା ତେବେ ? କ ମଙ୍ଗଳ ହୁଅନ୍ତା । ତା ହୃଦୟ ସନ୍ତପ୍ତ ହେଲା ।

ତା ହୃଦୟ ଅପେକ୍ଷା ଗୋଡ଼ ଆହୁରି କୌଶଳୀ । ସେ ଜଳ-ଜୀବ ସମ ଆହୁରି ଦୃଢ଼ ହୋଇ ଚାଲିବାକୁ ଲାଗିଲେ । ଅକସ୍ମାତ ତା ଗଳା ଶୁଖିବାକୁ ଲାଗିଲା । ସେ ମହାସାଗରର ଟୋପେ ପାଣି ମୁହଁରେ ଦେଲା ଏବଂ ତତ୍କ୍ଷଣାତ୍ ଥୁ ଥୁ କରି ଫୋପାଡ଼ ଦେଲା । ଖାରା ଲୁଣ ପର ପାଣି । କନ୍ତୁ ପାଣି ! ହେ ରାମ ! ବାଲୁକାମୟ ପ୍ରାନ୍ତରର ଶୋଷ ! ଏହା ତ ପ୍ରାଣଘାତକ ହୋଇଥାଏ ! ଅମାପ ପାଣି ଭରି ନଦୀ କୌଣସି କାମରେ ଲାଗିବ ନାହିଁ ତଥା ଆଖ ପାଖ ପାଞ୍ଚ କୋଶ ପର୍ଯ୍ୟନ୍ତ ମିଠା ପାଣି ଟୋପେ ହେଲେ ନାହିଁ । ଶୋଷ ଯୋଗୁଁ ବାଟରେ ଅସଂଖ୍ୟ ଲୋକ ମରି ଯାଆନ୍ତି । କନ୍ତୁ ବର୍ତ୍ତମାନ ପାଣି ପିଆଇବା ସୁବିଧା କରା-ଗଲାଣି । ସେଥିଯୋଗୁଁ କେହି ସାଥିରେ ପାଣି ଆଣିବାକୁ ଦେଲେ ନାହିଁ ।

ଚାଲି ଚାଲି ଯିବାକୁ ହେବ । ତେଣୁ ବୋଝ ବଢ଼େଇବା କି ଦରକାର ? ମା ସୁରେଇ ପୁଣ୍ଡି କରି ରଖିଥିଲା । ସମସ୍ତେ କହୁଥିଲେ ଘଡ଼ିକ ଭିତରେ ତ ଘରେ ପହଞ୍ଚିବ ।

ସେ କୂଳରେ ପହଞ୍ଚି ଠିଆ ହୋଇ ରହିଲି ଓ ପଛକୁ ଚାହିଁଲି । ନଦୀ ଘାଟ, ସେ କୂଳ କାଦୁଅ—ବାଲି, ପରେ ଖାଇ, ଗାଁର ସୀମା, ସାହି, ଘର ସବୁ ଦେଖି ଜଣାଗଲା ଯେପରିକି ଗୋଟିଏ ମାତ୍ର ପାହୁଣ୍ଡରେ ସେ ସ୍ୱଦେଶ ଛାଡ଼ି ପରିଦେଶରେ ପହଞ୍ଚିଗଲି । ତା ଗଳା ରୁଦ୍ଧ ହୋଇ ଗଲା । .

ଏଇଟା ତ ବିଦେଶ । ମୋ ବାପ ଘର ସେଠି ରହିଗଲା । ଯେ ପର୍ଯ୍ୟନ୍ତ ସେ ନଦୀରେ ଥିଲି ତାକୁ ଜଣା ଯାଉଥିଲା ଯେମିତି ସେ ବାପ ଘରେ ରହିଛି; ବାପଘର ଶୀତଳ ଛାୟାରେ ରହିଛି । କିନ୍ତୁ କୂଳକୁ ଆସିବା ମାତ୍ରେ ଜଣାଗଲା ଯେପରି କୌଣସି ଅଜଣା ଲୋକ ହାତରେ ପଡ଼ିଗଲା । ଏ କୂଳ ଅଜଣା, ଏ କାଦୁଅ ଅଜଣା, ଏଠା ବାଲି ଅଜଣା ତଥା ବାପ ପୁଅ ଦୁହେଁ ମଧ୍ୟ ଅଜଣା, ଅପରିଚିତ । ସେମାନେ ଯମଦୂତ ପରି ଜଣା ଯାଉଛନ୍ତି ।

ଗୋଡ଼ରେ ଆଉ ଚାଲିବା ଶକ୍ତି ନଥିଲା । ସେ ଅନେକ ବର୍ଷ ପରେ ଏ କୂଳରେ ଗୋଡ଼ ରଖିଛି ।

ଶ୍ରେଷ୍ଠ ଥିଲା । ସେତେବେଳେ ବିବାହ ପରେ ଥରେ ଆସିଥିଲା । ସେ ସମୟରେ ତାକୁ ଶଗଡ଼ରେ ବସେଇ ଆଣିଥିଲେ । ହଁ, ସେ ସମୟରେ ତା ମନରେ ବାଲିରେ ଖେଳିବା ପାଇଁ ଭାରି ଇଚ୍ଛା ହେଉଥାଏ । କିନ୍ତୁ ତଳକୁ ଓହ୍ଲାଇବାକୁ ଦେବ କିଏ ? ଏଇ ସବୁ କଥା ପୂର୍ବ ଜନ୍ମର ଭଳି ଜଣାଗଲା । ବାପା ଯଦି ବଞ୍ଚିଥାନ୍ତେ ନିଶ୍ଚୟ ଆଉ କେଉଁଠି ଭଲ ଘର ଦେଖି ବ୍ୟବସ୍ଥା କରିଥାନ୍ତେ । କିନ୍ତୁ ବିଚରା ମା ବିଧବା । ସେ ବା ଆଉ କରନ୍ତା କଅଣ ? ଅନେକ ବର୍ଷ ଧରି ଘରେ ରଖିବ ବା କିପରି ? ବାପା ଥିଲେ ଯେ ନିଜ ସମ୍ମାନ ଯୋଗୁଁ ଆଜି ପର୍ଯ୍ୟନ୍ତ ଦୁଃଖୀ ଝିଅକୁ ଶ୍ୱଶୁର ଘର ତାଡ଼ନାରୁ ରକ୍ଷା କରି ରଖିଥିଲେ ।

ଶ୍ୱଶୁର ମଧ୍ୟ ଜଣେ ପୁରା ରାକ୍ଷସ । ମଣିଷକୁ ମାରିଦେବା ପାଇଁ କ୍ଷଣେ ମଧ୍ୟ ଦରକାର ହୁଏ ନାହିଁ । ଲୋକେ କହନ୍ତି ବଡ଼ ପୁଅ ମଲା ପରେ ତାର ବହୁକୁ········କେ ଜାଣେ ଲୋକେ ମଧ୍ୟ କି ବିଚିତ୍ର ବିଚିତ୍ର କଥା କହନ୍ତି — ସେ ସମୟରେ ମୋର କୌଣସି ବୁଦ୍ଧି ନ ଥାଏ···

ଏହାର ଯୋଗୁଁ ଗର୍ଭ ରହିଲା । କୌଣସି ଉପାୟ ନ ପାଇ ସେ ତାକୁ ଠିକ ସ୍ଥାନରେ ପହଞ୍ଚାଇ ଦେଲା । ଗୃହଆଡ଼େ ପ୍ରଚାର ହେଲା ଯେ ସେ ନଈରେ ବୁଡ଼ି ମରିଗଲା । ଯାହାହେଉ ଏ ଜଣକ ରାକ୍ଷସ । ସେ ରାକ୍ଷସ ହେଉ କି ମଣିଷ ହେଉ ମୋର କି ଦରକାର ? ଏପରି ଲୋକକୁ ଦେଖି ଯଦି ଡରିବ ତା ହେଲେ ବାପର ଝିଅ ବୋଲାଇବ କେମିତି ? କିନ୍ତୁ ଯେଉଁଠି ମୋର ନିଜ ଖୁଣ୍ଟି ଥିଲା ସେଠି ମୁଁ ଯୋର କରିବ କେତେ ? ଏ ମୋ ସ୍ୱାମୀ........, ଛାଡ଼ ସେ କଥା ।

ମୋ ବାପା ସୁଖୀ ରହନ୍ତୁ । ସେ ଏତେ ଦିନ ପର୍ଯ୍ୟନ୍ତ ରକ୍ଷା କଲେ । ଆଜି ଯଦି ବଞ୍ଚିଥାନ୍ତେ ତା ହେଲେ କୌଣସି ଭଲ ଘର ଦେଖି ମୋର ବ୍ୟବସ୍ଥା କରି ଦିଅନ୍ତେ । କିନ୍ତୁ ସେ ବିଚରା ଉକାୟୁଦ୍ଧରେ ମାରା ଗଲେ । ସେ ଉକାୟୁଦ୍ଧରେ ଯିବା ପାଇଁ ବାହାରି ଥିଲେ, ସେଇ ସମୟରେ ମୋ ସ୍ୱାମୀ ମୋତେ ନେବା ପାଇଁ ଆସିଲେ । ସେତେବେଳେ ବାପା କେମିତି ଠିକ୍ ଠିକ୍ କଥା ଶୁଣାଇ ଦେଇଥିଲେ । "ବାପା ଆଗରେ ତ କିଛି ଚଳିବ ନାହିଁ । ମୋ ଝିଅ ଉପରେ ବଳ ଦେଖାଇବାକୁ ଆସିଗଲୁ । ଚାଲ ଯଦି ବଳ ଅଛି ତା ହେଲେ ମୋ ସଙ୍ଗରେ ଚାଲ, ଉକାୟୁଦ୍ଧରେ ନିଜ ବାହାଦୁରୀ ଦେଖାଇବୁ । ମୁଁ ମୋର ଦ୍ୱିତୀୟ ଝିଅ ମଧ୍ୟ ତୋତେ ଦେଇ ଦେବି ।" କିନ୍ତୁ ଛି ଛି କାପୁରୁଷ, କାପୁରୁଷ, ଏକାବାରେ କାପୁରୁଷ । ........."ମୋତେ ବାପା କହିଲୁ ନେବା ପାଇଁ ପଠାଇ ଛନ୍ତି ।" .........ଏତିକ କହି ସେ ମୁଣ୍ଡ ନୁଆଇଁଲା......ଜଣାଗଲା ଯେପରି କି ଦୁଧ-ଖିଆ ପିଲା । ମୋ ବାପା ସେତେବେଳେ ତାକୁ ତିରସ୍କାର କରି କହିଲେ—"ବାପା ଆଣିବା ପାଇଁ ପଠାଇଛି, ତୁ ତ ନେବାକୁ ଆସି ନାହୁଁ ନା ? ଯା, ଯା ଗୋରୁ ଚରେଇ ଥିବୁ । ତୁମ ପରି ଲୋକ ଘରକୁ ମୋ ଝିଅ ଯିବ ନାହିଁ । ମୋତେ କଅଣ ଜଣାଥିଲା ଯେ ତୁମ୍ଭେମାନେ ଏପରି......... ।" ସେ ବିଚରା ଭୟରେ ଥର ଥର କମ୍ପ ଥାଏ । ବାପା ତାକୁ ଉକାୟୁଦ୍ଧରେ ଯିବା ପାଇଁ କହିଥିଲେ । କିନ୍ତୁ ଯଦି ସେ ଯାଆନ୍ତା ତେବେ ପାହାଡ଼ ଭାଙ୍ଗି ପଡ଼ନ୍ତା ନାହିଁ ? ଏଇ କାମ ପାଇଁ ମଧ୍ୟ ବାପାଙ୍କ ଅନୁମତି ଦରକାର ତ ?

ସେହି ରାତିରେ ବାପା ଉକାୟୁଦ୍ଧରେ ଗଲେ ଓ ଏ ରାତି ସାରା ଘରେ ରହିଲି...... ।

ଅନେକ ବର୍ଷ ପରର ସେହି ରାତ ! ମୋର କିଛି ଚେତନା ରହିଲା ନାହିଁ । କେତେ ଅପାରଗ ହେଲେ ମଧ୍ୟ ଶେଷରେ ସେ ମୋର ସ୍ୱାମୀ ତ ! ସେହି ଅଭାଗୀ ରାତ ! ଦ୍ୱିତୀୟ ଦିନ ଖବର ମିଳିଲା ଯେ ବାପା ଆଜି ନାହାନ୍ତି । ଏଣେ ସ୍ୱାମୀ ମଧ୍ୟ କାହାକୁ କିଛି ନ କହି କେତେବେଳେ ଚାଲିଗଲା ତା ମଧ୍ୟ ଜଣା ନାହିଁ । ଭଲ ଲୋକ ଗଲାବେଳେ ମୋତେ ବାଡ଼ିକୁ ଡାକି କହି ଦେଇ ଯାଇ ପାରି ନ ଥାନ୍ତା ? ସେ ଯଦି ଚାହାଁନ୍ତା ତେବେ ବହୁ ଦିନ ପୂର୍ବରୁ ମୋତେ ଏଠୁ ନେଇ ଯାଇ ପାରନ୍ତା ।

ସିଂହ ସମାନ ବାପା ଯେତେବେଳେ ଚାଲିଗଲେ ଅନ୍ୟମାନଙ୍କର ସାହସ ନ ବଢ଼ିବ କେମିତି ? ଝିଅ ପଛ ନେବ କିଏ ? ଈର୍ଷା ଯୋଗୁଁ ଲୋକେ ମୋ ନାମରେ ଏଣୁ ତେଣୁ ଖବର ଉଡ଼େଇଲେ । ବିଚରା ମା ଭଲ କଅଣ କରି ପାରିବ ? ଝିଅ, ସେ ପୁଣି ସଗର୍ଭ ! ଆସିବା ଯିବା ଲୋକଙ୍କ ହାତରେ ମା ଶ୍ୱଶୁର ଘରକୁ ଖବର ଦେଲା ଯେ, ତୁମେ ଆସି ବହୁକୁ ନେଇ ଯାଅ ।' ଅମେ ବିଦା କରି ଦେବୁ । ଏଇ ବାପ-ପୁଅ ଦୁହେଁ ଆସିଲେ । ଜଣାଗଲା ଯେପରିକି ଗଡ଼ ଜୟ କରିବାକୁ ଆସିଛନ୍ତି । କିନ୍ତୁ ଠିକେ ତାଙ୍କ ମୁହଁ ଦେଖି ତ ? ଆଜି ଏ ମୋ ପୁରୁଷ········ । ଅନ୍ୟ ବ୍ୟବସ୍ଥା କରିବା କଥା ମା ମନରେ ପଶିଲା ନାହିଁ । ମୁଁ ମଧ୍ୟ ଚୁପଚାପ ରହିଲି । ମୋର ଧାରଣା ଥିଲା ଯେ ଦିନେ ନା ଦିନେ ମୋ ସ୍ୱାମୀର ସୁପ୍ତ ପୁରୁଷତ୍ୱ ସଚେତନ ହେବ ସେତେବେଳେ ସବୁ ଠିକ୍ ହୋଇ ଯିବ । କିନ୍ତୁ ଏ ତ ଦଶ ବର୍ଷ ପରେ ମଧ୍ୟ ଯେପରିକୁ ସେହିପରି ରହିଛି— ବାପାର ହାତ ଧରି ଚାଲିବା ଲୋକ । ନହେଲେ ଏତେ ବର୍ଷ ଧରି ଏମିତି ବସି ରହିଥାନ୍ତି ? କଅଣ ମୋତେ ଆଜି ମିଳୁ ନଥିଲେ କି ? ମୁଁ ମଧ୍ୟ ଏଇ ନଦୀର ପାଣି ପିଇଛି········ । ମାତା ମହାସାଗର······ ।

ଗର୍ଭର ବାଳକ ପୁଣି ହଲିଲା । ମା ଦୁର୍ଗାଙ୍କ ନାମ ସ୍ମରଣ କରି ଅଗ୍ରସର ହେଲା । ଅଳ୍ପ ଦୂରରେ ବାପ-ପୁଅ ଦୁହେଁ ଶୁଖିଲା ବାଲିରେ ଠିଆ ହୋଇ ଥାନ୍ତି । ତାଙ୍କ ମୁହଁରୁ ଧୂଆଁ ବାହାରୁ ଥାଏ । ଆରେ, ବାପ-ପୁଅଙ୍କ ଧୂଆଁରେ ମଧ୍ୟ କି ପ୍ରଭେଦ !

ତାର ଆସିବା ଦେଖି ସେମାନେ ପୁଣି ଅଗ୍ରସର ହେଲେ । ସେ କିଛି ସମୟ ପାଇଁ ଠିଆ ହୋଇ ରହିଲା । ତା ଆଖି ସାମନାରେ ଅନ୍ଧକାର ମାଡ଼ି ଆସିଲା । ସେ ଆଖି ଖୋଲିଲା । ବହୁଦୂର ପର୍ଯ୍ୟନ୍ତ କେବଳ

ମୃଗମରୀଚିକା ଦେଖା ଦେଉଥାଏ । ସେହି ମୃଗ-ମରୀଚିକାରେ ବାପ-ପୁଅ ଦୁହେଁ ଏକାକାର ଜଣା—ଯାଉଥିଲେ । ସେ ଚିତ୍କାର କରିବା ପାଇଁ ଚେଷ୍ଟା କଲା - "ମୁଁ ପାଣି ପିଇବ ।" କିନ୍ତୁ ଗଳାରୁ ଶବ୍ଦ ଫୁଟୁ ନଥାଏ ।

ସେ ଗୋଡ଼ର ସମସ୍ତ ଶକ୍ତି ଏକଜ କରି ଚାଲିବାକୁ ଲାଗିଲା । ବାପ-ପୁଅ ଦୁହେଁ ବେଳେ ବେଳେ ପଛକୁ ଚାହିଁ ପୁଣି ଅଗ୍ରସର ହେଉଥାନ୍ତି ।

ତାର ଦୃଷ୍ଟି ପୁଣି ପଛକୁ ଗଲା । ମନେହେଲା ଯେପରି କିଏ ପଛରୁ ଡାକୁଛି—"ଝିଅ ଫେରି ଆ, ଝିଅ ଫେରି ଆ ! ବାପ ଘର ଲତା ବୃକ୍ଷ, ଖାଇ, ନଦୀ ବାଲି । ଆରେ ନଦୀ ପାଣି ମଧ୍ୟ ଦୂରକୁ ଦୂରକୁ ଚଳା ପରି ଲାଗୁଛି । ଜଣାଗଲା ପାଦେ ପାଦେ ତାର ଗୋଡ଼ର ଶକ୍ତି କ୍ଷୀଣ ହୋଇ ଆସୁଛି ।

ଆଉ ସେ ଦୁଇଜଣ ! ସେମାନେ ତ ଖୁବ୍ ଚଞ୍ଚଳ ଚଞ୍ଚଳ ଚାଲି ଯାଉଥାନ୍ତି ।

"ଟିଆ ହୁଅନ୍ତୁ........ ମୋର ପାଣି ଦରକାର ।" ସେ ଡାକ ଛାଡ଼ିଲା । କିନ୍ତୁ ସମ୍ମୁଖରୁ ବହି ଆସୁଥିବା ବାୟୁ ପ୍ରବାହ ସେହି ଶବ୍ଦ ବାପ ଘରକୁ ଉଡ଼ାଇ ନେଇ ଗଲା ।

ତା ତଣ୍ଟି ଶୁଖିଗଲା । ତା ପିନ୍ଧିଲା ଯୋତାରେ ବାଲି ଭର୍ତ୍ତି ହୋଇଗଲା । ସେ କିଛି ସମୟ ପାଇଁ ବେକ ଗଲା । ସୂର୍ଯ୍ୟର ପ୍ରଚଣ୍ଡ କିରଣରେ କିଛି ସମୟ ପାଇଁ ତା ଆଖି ବନ୍ଦ ହୋଇଗଲା । ସେ ଆଖି ଖୋଲି ଦେଖିଲା ଚତୁର୍ଦ୍ଦିଗରେ କେବଳ ମୃଗତୃଷ୍ଣା । ନଦୀ ମଧ୍ୟ ମୃଗତୃଷ୍ଣାରେ ପରିଣତ ହେଲା । ଆଖପାଖ ଯେତେଦୂର ଯାଏ ଦୃଷ୍ଟି ପଡ଼ୁଥାଏ, କେଉଁଠି ହେଲେ ଗଛ ପତ୍ର, ପଶୁ-ପକ୍ଷୀ ଦେଖା ଯାଉ ନ ଥାନ୍ତି । ଧୂ ଧୂ ହୋଇ ଗରମ ପବନ ଧୂଳି ଉଡ଼ାଇ ପ୍ରବାହିତ ହେଉଥାଏ । ଗୋଟିଏ ପଟେ ଶ୍ୱଶୁରଳୟର ଘନ କାଳିଆ ସୀମା ଓ ଅନ୍ୟ ପଟେ ପିତୃ-ଆଳୟର ଶେଷ ସୀମା ।

ମନେହେଲା ମରୁଭୂମି ମଧ୍ୟରେ ସେ ଏକା ଅସହାୟ ହୋଇ ଠିଆ ହୋଇଛି । ହଁ ସେ ଦୁହେଁ ଅଛନ୍ତି । କିନ୍ତୁ ସେମାନେ ତ କେବଳ ଚାଲୁଛନ୍ତି ପଛକୁ ବୁଲି ଚାହୁଁ ନାହାନ୍ତି ମଧ୍ୟ । ଏହି ଜନ ହୀନ ତପ୍ତ ଭୂଇଁରେ ଜୀବନ ଚାଲିଗଲେ ମଧ୍ୟ ପଚାରିବାବାଲା କେହି ନାହିଁ ।

"ଏକା ତୋର ଜୀବନ ମାତ୍ର ଅଛି !" ତା ଉଦରସ୍ଥ ବାଳକ ଚଳଚଳ ହେଲା, ମନେ ହେଲା ସେଇ ପ୍ରଶ୍ନ ପଚାରୁଛି । କୌଣସି ବାଳକର କ୍ରନ୍ଦନ ଧ୍ୱନି ମଧ୍ୟ ତାହାକୁ ଶୁଣାଗଲା । ଆରେ ଏ ମରୁଭୂମିରେ କାହିଁ ବାଳକ କେଉଁଠି ? ଓଃ ! ଏହି ଉଦରରେ ଏପରି ଆଲୋଡ଼ନ କାହିଁକି ? ନିଜ ସଖୀର ବାଳକ କଥା ମନେ ପଡ଼ିଲା । ମନେ ହେଲା ଯେ ସେହି ବାଳକଟି କାନ୍ଦୁଛି । ସେ ନିଜେ ଯାଇ ତାହାକୁ ଖେଳାଇବ ଓ ଦୁଇ ଚାରି ମାସ ବାଦେ ତା ନିଜ ପୁଅ···ହଁ ହଁ, ପୁଅ—ଦୁଇଜଣ ମିଶି ଖେଳିବେ । ତା ହୃଦୟରେ ଏକରକମ ଉନ୍ମାଦ ଜାଗିଲା । ସ୍ତନ ମଣ୍ଡଳରେ ଦୁଧ ଉଚ୍ଛୁଳି ଉଠିଲା । ସେ ଦୁଗ୍ଧରେ ପରିପୂର୍ଣ୍ଣ ହେଉଥିବା ସ୍ତନକୁ ଖୁବ୍ ଉଲ୍ଲାସ ହାତରେ ଚାପିବାକୁ ଲାଗିଲା । ଧକ୍, ଧକ୍ ପାପୀ ହୃଦୟ ମଧ୍ୟ କି ବିଚିତ୍ର ! ଆଖି କୋଣରେ ଦୁଇ ବିନ୍ଦୁ ଆନନ୍ଦାଶ୍ରୁ ଦେଖାଦେଲା । ତାକୁ କି ପୋଛି ସେ ଅଗ୍ରସର ହେଲା ।

ହଠାତ୍ ବାପ-ପୁଅ ଦୁହିଁଙ୍କୁ ଠିଆ ହୋଇଥିବା ଦେଖି ତା ମନ ଶଙ୍କିଗଲା । କୁହେଁ ଠିଆ ହୋଇ ବଡ଼ ଧୂଆଁ ଟାଣୁଥିଲେ । ଅକସ୍ମାତ ମନେ ହେଲା ପଛରେ ଯେପରି କେହି ଜଣେ ଆସୁଛି । ସେ ଦୃଷ୍ଟି ଫେରାଇଲା । ବାଘାଙ୍କ ପଦ ଚିହ୍ନ ପରି ମନେ ହେଲା । ହା ରାମ ! ଏ କଅଣ ମୁଁ ଦେଖୁଛି ? ପରନ୍ତୁ କେହି ଦିଶୁ ନ ଥାନ୍ତି । ସେ ଚାଲିବାକୁ ଲାଗିଲା । କିନ୍ତୁ ପୁଣି ପଦଚାପ ଶୁଣାଗଲା । ତାର ହୃଦୟ ଭୟରେ କାଂପିବାକୁ ଲାଗିଲା ।

ସେ ବାପ-ପୁଅଙ୍କ ନିକଟରେ ଯାଇ ଠିଆ ହୋଇଗଲା । ତା ସ୍ୱାମୀ କିଛି ସମୟ ପାଇଁ ତା ଆଡ଼କୁ ଚାହିଁଲା । ଶ୍ୱଶୁର ପିଠି ବୁଲାଇ ଠିଆ ହୋଇଥାନ୍ତି । ସ୍ୱାମୀ କିଛି କହିବାକୁ ଚାହୁଁଥିଲେ କିନ୍ତୁ କହି ପାରିଲେ ନାହିଁ । ସେ କହିଲା—

"ପାଣି ପିଇବି, ମୋ ତଣ୍ଟି ଶୁଖିଗଲାଣି ।"

"ଭଲା ଏଇଠି କେଉଁଠି ପାଣି ଅଛି ?"— ତା ସ୍ୱାମୀ ଗୁଣଗୁଣେଇଲା ।

ପରେ ହଠାତ୍ ଗୋଟିଏ ବାଳକର କାନ୍ଦଣା ଶୁଣାଗଲା । ତାହାର ଶ୍ୱଶୁର ଖେଁଖାରିଲେ । "ହାଁ ପାଣି ଅଛି, ଚାଲ ।"

ଶବୁ ସ୍ୱାମୀଙ୍କ ଚେହେରାରେ ବ୍ୟାକୁଳତାର ଛାପ୍ ସ୍ପଷ୍ଟ ଦେଖି ଛାଡ଼ିଲା । କିନ୍ତୁ କାରଣ କିଛି ବୁଝିପାରିଲା ନାହିଁ । ଶ୍ୱଶୁର ଚାଲିଲେ ।

ସେମାନେ ଅଳ୍ପ ଦୂର ଗଲେ । ମନେ ହେଲା ଯେମିତି କାନ୍ଦଣାର ବିପରୀତ ଦିଗରେ ସେମାନେ ଗତି କରୁଛନ୍ତି । ବାଳକର କ୍ରନ୍ଦନ ଧ୍ୱନି ଦୂର ହୋଇ ଯାଉଥାଏ ।

''ସେପଟେ କେଉଁଠି ଯାଉଛ ? ସେପଟେ କେଉଁଠିକି ଯାଉଛ ? ପାଣି ତ ଏପଟେ ଅଛି,''—ସେ କହିଲା ।

"ପାଣି ଏପଟେ ଅଛି ବନ୍ଧୁ ! ତୁମକୁ ଏମିତି ଶୁଣାଯାଉଛି''—ଯେଉଁ ଦିଗକୁ ସେମାନେ ଯାଉଥିଲେ ସେହି ଆଡ଼କୁ ହାତ ଦେଖାଇ ଶ୍ୱଶୁର କହିଲେ ।

ଆହୁରି ଆଗକୁ ସେମାନେ ଚାଲିଲେ । ବାଳକର କ୍ରନ୍ଦନରୋଳ ଝିଙ୍କାରି ପୋକର ଝିଂ ଝିଂ ସ୍ୱର ପରି ଶୁଣାଗଲା ।

ପାଣି ! ପାଣି ! ପାଣି ! ତା ତଣ୍ଟି ଶୁଖିଗଲା । ମୁଁ ଆଉ ଚାଲି ପାରିବି ନାହିଁ, ମୋତେ ପାଣି ଦିଅ''—କହି ସେ ସେଠି ବସିଗଲା ।

ଆଗରେ ଚାଲୁଥିବା ବାପ-ପୁଅ ଦୁହେଁ ମଧ୍ୟ ରୋକି ଗଲେ । ବାପା ଚାରିଆଡ଼କୁ ଦୃଷ୍ଟି ପକାଇଲେ, ଚତୁର୍ଦ୍ଦିଗରେ ଏକାବାରେ ନିସ୍ତବ୍ଧ ହୋଇ ରହିଛି । ଏକା ପବନ ଧୂଳି ଉଡ଼ାଇ ବହୁଥିଲା ।

''ଚାଲି ପାରିବୁ ନାହିଁ ?'' ଶ୍ୱଶୁରଙ୍କ ଚିତ୍କାର ଶୁଣାଗଲା । 'ଆରେ, ଦେଖୁଛୁ କଅଣ ?''—ସେ ପୁଅକୁ ଉତ୍ୟକ୍ତ କରି କହିଲେ ।

ସ୍ୱାମୀ ତା ନିକଟକୁ ଗଲା । ସେ ଓଢ଼ଣା ଟାଣି ମୁଣ୍ଡରେ ହାତ ଦେଇ ବସିଥାଏ । ସ୍ୱାମୀଙ୍କ ଛୁରୀ ତା ଦେହରେ ପଡ଼ିବା ଦେଖିଲା । ଓଢ଼ଣା ଖୋଲି ଯେମିତି ସେ ସ୍ୱାମୀଙ୍କୁ ଚାହିଁଛି ଠିକ୍ ସେତିକିବେଳେ ସ୍ୱାମୀ ତା ଉପରେ ମାଡ଼ି ବସିଲା ଓ ଦୁଇ ହାତରେ ଗଳା ଜାବୁଡ଼ି ଧରିଲା ।

ସେ ଚକିତ ହେଲା ଓ ଚେତନା ଶୂନ୍ୟ ହୋଇ ଭୂଇଁରେ ଲୋଟି ଗଲା । କିନ୍ତୁ ତତ୍‌କ୍ଷଣାତ ସଚେତନ ହୋଇ ସ୍ୱାମୀଙ୍କ ତଳ ପେଟକୁ ଖୁବ ଜୋରରେ ଲାତ ମାରିଲା । ସ୍ୱାମୀ କିଛି ଦୂରରେ ପଡ଼ିଲେ । ସେ ଧୀରେ ଧୀରେ ଉଠୁଥାନ୍ତି, ଏତିକିବେଳେ ଶ୍ୱଶୁରଙ୍କ ରକ୍ତ-ପିପାସୁ ଚକ୍ଷୁ ତା ଉପରେ ବୁଲୁଥିବାର ଦେଖି ସେ ଚମକି ପଡ଼ିଲା ।

ଶ୍ୱଶୁର ଗଧିଆ-ପଞ୍ଜା ସମ କୋଠର ଅଙ୍ଗୁଳି ଥିବା ହାତରେ ତା ଗଳାକୁ ଚିପି ଧଇଲେ । ଦାନ୍ତ କଡ଼ମଡ଼ କରି ଗଳାର ଘଣ୍ଟି କାକୁ ଚିପି କହିଲେ— ହଳ ଚଷିବୁ ନାହିଁ ? ହଳ ପାରିବୁ ନାହିଁ ? ସେ ଏତେ ବର୍ଷ ହଳ ଚଷିଲା ନାହିଁ ସେ ବର୍ତ୍ତମାନ କଦର ଚଳିବ ? ଘରେ ଘରେ ବୁଲୁଥିବୁ, ମୁହଁ ମାରୁଥିବୁ ! ତୁ ମୋ ଘରେ ରହିପାରିବୁ ନାହିଁ ! ବେଶ୍ୟା ! ତୁ ତ ବର୍ତ୍ତମାନ ଏଇଠି...... ...। ଆରେ ଏ ମାଇଚିଆ ! ତୁ ଦେଖୁଛୁ କଅଣ ? ଧର, ଧର ମୋର ଗୋଡ଼......... ।"

ଗଳାର ସ୍ୱର ଗୁରୁତର ହେଉଥାଏ । ସେ ଗୋଡ଼ ଛାଟିବାକୁ ଲାଗିଲା । ସ୍ୱାମୀ ଗୋଡ଼ ଧରିବାକୁ ଚେଷ୍ଟା କରୁଥାଏ । ତା ତଣ୍ଟି ଛୁଟିବାକୁ ଲାଗିଲା । କ୍ଷଣେ ପାଇଁ ତାକୁ ଜଣାଗଲା ଯେପରିକି ସେ ମହାସାଗରର ପାଣିରେ ବୁଡ଼ିଯାଉଛି । ଆଖି ଝାଣି ହେଲା ଓ ଅଳ୍ପ ସମୟ ପରେ ଏକାବାରେ ଖୋଲିଗଲା । ତା ମୁହଁ ଉପରେ ଶ୍ମଶ୍ରୁ ପୂର୍ଣ୍ଣ ଶ୍ୱଶୁରଙ୍କ ଗଧିଆ-ସମ ମୁହଁ ଦିଶୁଥାଏ । ସେଥିରୁ ବଡ଼ର ଦୁର୍ଗନ୍ଧ ବାହାରୁ ଥିଲା । ତାର ମୁହଁ ଅଢ଼ୁଆଳରେ ସାମାନ୍ୟ କିଛି ଆକାରରେ ଅଂଶ ଦେଖା ଯାଉଥାଏ । ତାର ବିଶ୍ୱାସ ହେଲା ସତେ ଯେମିତି ବାପା ଆସି ପବନରେ ଏପଟେ ସେପଟେ ହୋଇ ବୁଲୁଛନ୍ତି— ତା ଛୁଆଙ୍କୁ କେହି ମାରିବା ଦେଖିଲେ ଚିଲ ଯେପରି ଚୁପେଚାପେ ଚକର କାଟି ଉଡ଼ୁଥାଏ ଠିକ୍ ସେହିପରି ।

"ବାପୁ !" ତା ମୁହଁରୁ ଅନ୍ତିମ ଡାକ ବାହାରିଲା । ତାପରେ ଅନୁଭବ କଲା— ଗୋଟିଏ ବାକ୍ସ ଭିତରେ ଯେପରି ତାକୁ ବନ୍ଦ କରିଯାଉଛି । ଦୂର ଅନେକ ଦୂରରୁ ବାଳକର କ୍ରନ୍ଦନ ଧ୍ୱନି ତାକୁ ଶୁଣାଗଲା । ତାପରେ ଆଖି ବନ୍ଦ ହେଲା ।

ଶ୍ୱଶୁର ଶେଷଥର ପାଇଁ ଖୁବ୍ ଜୋରରେ ତା ତଣ୍ଟିକୁ ଚିପି ଠିଆ ହେଲେ । ପୁଅର ଦେଖିଲା ଏ ପର୍ଯ୍ୟନ୍ତ ସେ ଯେଉଁ ଗୋଡ଼ ଦୁଇଟି ଧରିଥିଲା ସେଥିରେ ବର୍ତ୍ତମାନ କିଛି ଦମ ନାହିଁ । ସେ ମଧ୍ୟ ଗୋଡ଼ ଛାଡ଼ି ଠିଆ ହେଲା । ଶବର ଆଖି ଓ ଜିଭ ବାହାରକୁ ବାହାରି ଯାଇଥିଲା ।

"ବାନ୍ଧି ଦେ ମୋର ମୁହଁକୁ"—ବାପା ଆଦେଶ ଦେଲେ । ପୁଅ ସେହିପରି ଠିଆ ହୋଇ ରହିଲା । "ମର, ମାଇଚିଆ !"— କହି ବାପା

ଠିଆ ହେଲା ଓ ଅନୁଭବ-ପର ଦୃଢ଼ତାର ସହ, ନିଷ୍କ୍ରାନ୍ତ ହୋଇ ପୁଅ-ବଧୂର ମୁହଁରେ ଓଢ଼ଣୀଟି ଘୁଞ୍ଚେଇ ଦେଲା··· ।

ଅଳ୍ପ ସମୟ ପରେ ସ୍ତ୍ରୀର ଦେହଟିକୁ ଦୁହେଁ ମିଶି ବାଲିରେ ପୋତି ଦେଲେ ଓ ଯେଉଁ ଦିଗରୁ ବାଳକର କାନ୍ଦଣା ଶୁଣା ଯାଉଥିଲା ସେହି ଦିଗକୁ ଗଲେ ।

ପାଣି ପାଖରେ ପହଞ୍ଚି ଦୁହେଁ ପାଣି ପିଇଲେ । ବାପା ପାଣିବାଲୀକୁ ପଚାରିଲା—ପିଲାଟି ଏତେ କାନ୍ଦୁଛି କାହିଁକି ?

"ଏ ଆଜି ସକାଳୁ କାନ୍ଦୁଛି, ରୁପାହୋଣ !" ପରେ ପଚାରିଲା—"କାହିଁ, ବନ୍ଧୁଙ୍କୁ ନେଇ ଆସିଲ ନା ନାହିଁ ?"

"ରୁପାହୋଣ ଚଲମ ଭରି କହିଲା—"ପଠାଇଲେ ନାହିଁ, ଭଉଣୀ !"

"ସେମାନେ ତ ସେମିତି ଦୁଷ୍ଟ ! ଅନେକ ବର୍ଷ ହେଲା ଘରେ ବସେଇ ରଖିଛନ୍ତି । ତାଙ୍କ ଉପରେ ମା ଦୁର୍ଗାଙ୍କ କୋପ ପଡ଼ୁ ।"

"ଏମିତି କହନା ଭଉଣୀ !"—କହି ରୁପାହୋଣ ଉଠି ଠିଆ ହେଲା ଓ ଯାଉ ଯାଉ ପାଣିବାଲୀ ହାତରେ ଟଙ୍କାଟିଏ ଥୋଇଦେଲା ।

"ନେ ପିଲାକୁ କିଛି କିଣି ଖୁଆଇ ଦେବୁ ।" ଏଇ ବୁଢ଼ା ପାଖରୁ ଟଙ୍କାଟି ପାଇ ପାଣିବାଲୀ ଅବାକ୍ ହୋଇଗଲା ପୁଣି ବ୍ୟାକୁଳ-ଗୃହିଣୀରେ ତାଙ୍କ ପଛକୁ ଚାହିଁ ରହିଲା ।

କିଛି ଦୂର ଯିବା ପରେ ମୁହଁରୁ ଧୂଆଁର ମେଘ ସୃଷ୍ଟି କରି ବାପ ପୁଅକୁ କହିଲା—"ମେଘା, ତୁ ଦେଖିଲୁ ନା ?"

"କଅଣ ବାପା ?"—ଥରଥର ହୃଦୟରେ ପୁଅ ପଚାରିଲା ।

"ତା ପେଟରେ ପିଲା ଥିଲା ତାର·········।"

'ହଁ ବାପା । କିନ୍ତୁ···· ! ସେ ଆହୁରି କିଛି କହିବାକୁ ଚାହୁଁଥିଲା କିନ୍ତୁ କେଉଁ ଅଜଣା, ଅଦୃଶ୍ୟ ଭୟରେ କିଛି କହି ପାରିଲା ନାହିଁ ଏବଂ ନିଜ ବାପ ପଛେ ପଛେ ଅର୍ଦ୍ଧମୃତ ସମ ଗୋଡ଼ ଘୋସାଡ଼ି ଘୋସାଡ଼ି ଚାଲିବାକୁ ଲାଗିଲା ।

* * *

# ବଦମାସ୍

ସ୍ୱ ଝେବରଚନ୍ଦ ମେଘାଣୀ

ରେଳଗାଡ଼ି ଚକର ପ୍ରଥମ ଗୋଲେଇ ବୁଲି ସାରିଥିଲା । ରାମଲାଲ ଦୁଆରଟି ଖୋଲି ଯେନ-ତେନ ପ୍ରକାରେ ସ୍ତ୍ରୀକୁ ଡ଼ବା ଭିତରକୁ ଠେଲିଛି କି ନାହିଁ ଚକ ଘୂରିବା ଶବ୍ଦ ବଢ଼ିଗଲା । ରାମଲାଲ ଖିଡ଼କି ବାଟରେ ହିଁ ତିନୋଟି ସନ୍ତାନ ତଥା ସିନ୍ଦୁକ, ଗଣ୍ଠିଲିକୁ ଯେମିତି ସେମିତି ଭିତରକୁ ଠେଲିଦେଲା । ରୁକ୍ମଣୀ ପଡ଼ି ପଡ଼ି ନିଜକୁ ସମ୍ଭାଳି ନେଲା । ବାକ୍ସ, ଗଣ୍ଠିଲି ତଥା ପିଲାମାନଙ୍କୁ ସମ୍ଭାଳୁ ସମ୍ଭାଳୁ ଗାଡ଼ି ଷ୍ଟେସନ-ହତା ପାର କରି ସାରିଥାଏ ।

ପ୍ଲାଟଫାର୍ମଟି ସମ୍ପୂର୍ଣ୍ଣ ଜନ-ଶୂନ୍ୟ ହୋଇଗଲା । ଯେଉଁମାନେ ଏହି ଦୃଶ୍ୟଟି ଦେଖିଥିଲେ ସେମାନେ ରାମଲାଲକୁ ଭଲ-ମନ୍ଦ କହିବାକୁ ଲାଗିଲେ ।

"ସବୁ ସାହେବ ପୁଅ ସାଜିଲେଣି । ଠିକ୍ ସମୟରେ ଆସି ପହଞ୍ଚିବେ ।"

"ଆଜି ନିଜ ମାଇପକୁ କାହା ଜିମା କରୁଛନ୍ତି ସେଆଡ଼କୁ ମୋଟେ ଲକ୍ଷ୍ୟ ନାହିଁ ।"

ଏ କଥା ଶୁଣି ରାମଲାଲ ଆଶ୍ଚର୍ଯ୍ୟାନ୍ୱିତ ହେଲା । ସେହି ଡବାରେ କିଏ ଥିଲା ? ସେ ପତ୍ନୀକୁ କାହା ଜିମା ଦେଲା ? ସେ ନିଜ ସ୍ମୃତି ଶକ୍ତି ପ୍ରତି କିଞ୍ଚିତ ବିରକ୍ତ ହୋଇ ଉଠିଲା ।

ଦେଶୀ ବିଡ଼ିର ବର୍ତ୍ତୁଳାକାର ଧୂଆଁ ତା ନାକରେ ପଶି ଯେଉଁ ଦୁର୍ଗନ୍ଧ ସୃଷ୍ଟି କରିଥିଲା ସେ କଥା ତାର ସ୍ମରଣ ହେଲା । ସାଥେ ସାଥେ କାହାରି ଗମ୍ଭୀର ମୁଖରୁ ଆଠ-ଦଶଟି ଶବ୍ଦରେ ସୃଷ୍ଟ ଅଶ୍ଳୀଳ ବାକ୍ୟ ତା କାନରେ ପଡ଼ିଥିବା କଥା ମଧ୍ୟ ମନେ ପଡ଼ିଲା । ତାର ଦୃଷ୍ଟି କୌଣସି

ସ୍ପଷ୍ଟ ଅକୃତି ଦେଖି ନ ଥିଲା । କିନ୍ତୁ ଯେଉଁ ଅସ୍ପଷ୍ଟ ଅକୃତି ତା ଦୃଷ୍ଟିରେ ଦିଶୁଥାଏ ତେଣୁ ତାରେ କଳା ଟୋପି, କଳା ଦାଢ଼ୀ, କଳା ଲୁଙ୍ଗୀ ଅଦ୍ଧ କାଳିମା ପ୍ରବଳ ହୋଇ ତା ହୃଦୟରେ ଚିନ୍ତାପୂର୍ଣ୍ଣ ଘନ ମେଘମାଳାର ସୃଷ୍ଟି କରୁଥାଏ । ଷ୍ଟେସନ ଫାଟକରୁ ବାହାରିବା ମାତ୍ରେ ଜଣେ ପରିଚିତ ବ୍ୟକ୍ତି ରାମଲାଲଙ୍କୁ ପଚାରିଲେ—

"ଭାଇ ରାମଲାଲ ! ସାଥିରେ କିଏ ଥିଲା ?"

"ସାଥି ତ କେହି ମିଳିଲେ ନାହିଁ ।"

ତାହାହେଲେ ତୁମେ କାହାକୁ କହୁଥିଲ—"ଭାଇ ! ପିଲାଙ୍କ ସୁବିଧା ଅସୁବିଧା ଦେଖିବ ।"

"ହଁ, ମୁଁ କହୁଥିଲି ନିଶ୍ଚୟ, କିନ୍ତୁ କାହାକୁ କହିଲି, ଏ କଥା ମୋର ମୋଟେ ମନେ ନାହିଁ ।"

"ଏବେ କ'ଣ ଜରୁରୀ ଥିଲା, କାଲି ଚାଲିଥାନ୍ତ ।"

"ହଁ, ମୁଁ ମଧ୍ୟ ବର୍ତ୍ତମାନ ଅନୁତାପ କରୁଛି ।"

"ଜାଣେ ନା କାହିଁକି, ରେଳଗାଡ଼ିକୁ ଦେଖିବା ମାତ୍ରେ ଆମ ଲୋକେ ହଡ଼ବଡ଼େଇ ଯାଆନ୍ତି, ପାଗଳ ହୋଇଯାଆନ୍ତି, ପାଗଳ !"

"ପାଗଳ" ଶବ୍ଦ ରାମଲାଲର ହୃଦୟ ଭେଦ କରି ସେପାଖକୁ ଚାଲିଗଲା । କାଠିଆବାଡ଼ କଣ୍ଠରୁ ନିଃସୃତ ଏହି ବ୍ୟଙ୍ଗବାକ୍ୟ ରାମଲାଲଙ୍କ ଅନ୍ତରରେ ଅବିକଳ ଚିତ୍ର ଆଙ୍କି ଦେଲା । ଲାଲବର୍ଣ୍ଣର ଲୁଗା ଦେଖିବା ମାତ୍ରେ ଷଣ୍ଢ ଯେପରି ଚିଡ଼ି ଯାଏ, ଓଟକୁ ଦେଖି ମଇଁଷି ଯେପରି କୁଦା ମାରେ, ମିଲ-ମାଲିକଙ୍କୁ ଦେଖିବା ମାତ୍ରେ ଆଧୁନିକ ମଜଦୁର ନେତା ଯେପରି ସଜାଗ ହୋଇଯାଏ—ଠିକ୍ ସେ ପ୍ରକାର ରେଳଗାଡ଼ିର ଗାର୍ଡ଼ ହାତରେ ଲାଗିଥିବା ଲାଲବତି ହଲୁଥିବା ଦେଖି ରାମଲାଲ ପାଗଳ ହୋଇଗଲା । ସେ ପୁଣି ଏତେଦୂର ଭୁଲ ଯେ ଗ୍ରେଟ ଛୋଟ ଦୁଧ-ମୁହାଁ ଶିଶୁଙ୍କୁ, ତାର ପିଲାଙ୍କ ମାତାକୁ ଆତ୍ମୀୟ ସ୍ୱଜନ ବଦଳେ ନିଷ୍ପ୍ରାଣ ଗଣ୍ଠିଲି ସମ ବୁଝି ବସିଲା । ହେ ଭଗବାନ ! ମନୁଷ୍ୟ ନିଜ ଗଣ୍ଠିଲିଟିକୁ ମଧ୍ୟ ନିଜ ପରିଚିତ ଓ ବିଶ୍ୱସ୍ତ ବନ୍ଧୁ ହାତରେ ସମର୍ପଣ କରିଥାଏ । ଦିନକର କଥା, ରାମଲାଲ ବଢ଼ିଆ କଞ୍ଚା ଆମ୍ବ ଗୋଟିଏ ଟୋକେଇ ଘରକୁ ପଠାଇବା ପାଇଁ ଯାଉଥିଲା । ସେତେବେଳେ ଏହି

ସାଧାରଣ ବସ୍ତୁ ପାଇଁ ସେ ଅନ୍ୟମାନଙ୍କୁ ବିଶ୍ୱାସ କରି ପାରନ୍ତି ନାହିଁ । କାରଣ କାଳେ ସ୍ୱଜନଟି ଚମଣୀ କମ୍ବା ଅମୂଲ୍ୟ ତିଆରି କରିବା ପାଇଁ ବସ୍ତାରେ ଗୋଟିଏ ଦୁଇଟି ଅମ୍ବ କାଢ଼ି ପାରନ୍ତି । କିନ୍ତୁ ଆଜ ସେ କ'ଣ ନ କଲା ?'

ପୁଣି ଦ୍ୱିତୀୟ ବ୍ୟକ୍ତି ଆସି ରାମଲାଲ କାନରେ କିଛି କହିଲା । କଥା ହେଲାବେଳେ ତା ଆଖି ଚାରିଆଡ଼କୁ ଘୂରୁଥାଏ । କାଳେ ଏହି ଷ୍ଟେସନର କାନ୍ଥରୁ କମ୍ବା ମେଜଆରୁ କେହି କେଉଁଠି ଲୁଚିଥାଇ ବାହାରି ପାରେ ।

ସେ ଯେଉଁ କଥାଟି କହିଲା ତାର ସାର ମର୍ମ ଏହି ଯେ—

"ସେଠଜୀ, ଏହି ଡବାରେ ଅହମଦାବାଦ ସହରର ସମସ୍ତ ଗୁଣ୍ଡାଙ୍କ ସରଦାର ଅଲରଖା ବସିଥିଲା । ଆଉ ଅନ୍ୟ ଆଠ-ଦଶ ଜଣ ହେଉଛନ୍ତି ତାର ଢଙ୍ଗିଆ-ଗଞ୍ଜେଇଖିଆ ବନ୍ଧୁ ସାଥି । ମୁଁ ସେଇଠି ଠିଆ ହୋଇଥିଲି । ତାଙ୍କ ସାଥିରେ ଗୋଟିଏ ବେଶ୍ୟା ମଧ୍ୟ ଥିଲା । ସମସ୍ତେ ତା ସହ ଥଟ୍ଟା-ତାମସା କରୁଥାନ୍ତି । ସମସ୍ତେ ସେହି ବେଶ୍ୟାଟିକୁ ଠେଲାଠେଲି କରି ଅଲରଖା ନିକଟରେ ପହଞ୍ଚାଉଥିଲେ । ଏହି ସବୁ କଥା ମୁଁ ନିଜ ଆଖିରେ ଦେଖିଛି । ୩୦ ଜଣ ଯାତ୍ରୀ ବସିବା-ଯୋଗ୍ୟ ଡବାରେ ଦଶ ଜଣ ବ୍ୟତୀତ ଏଗାର ନମ୍ବର ଯାତ୍ରୀ କେହି ନ ଥାଆନ୍ତି । ସେମାନଙ୍କୁ ଦେଖିବାମାତ୍ରେ ସମସ୍ତେ ଅନ୍ୟ ଡବାକୁ ଚାଲି ଯାଆନ୍ତି । ସେଠଜୀ, ତୁମେ ଜାଣି ଶୁଣି ନିଜ ପିଲାପିଲାଙ୍କୁ ବାଘ-ସିଂହଙ୍କ ମୁହଁରେ କାହିଁକି ଠେଲି ଦେଲ ?"

ରାମଲାଲ ଏତିକି ଶୁଣି ସ୍ତବ୍ଧ ହୋଇ ରହିଲା । ସେଇ ଆଗନ୍ତୁକଟି ପୁଣି ଥରେ ଚତୁର୍ଦ୍ଦିଗରେ ଆଖି ବୁଲାଇ ଆଣିଲା । ମୁହଁରେ ହାତର ଆଡ଼ୁଆଳ କରି ନିଜକଥା ପୂର୍ଣ୍ଣ କଲା —"ସେଠଜୀ, ଦଶ ପନ୍ଦର ଦିନରେ ଥରେ ଅଲରଖା ଏଆଡ଼େ ଚକ୍କର ଲଗାଇଯାଏ । ଯେଉଁ ଦିନଠାରୁ ସେ ଏ ଅଞ୍ଚଳରେ ଘୂରି ବୁଲୁଛି ରେଳଡବାରେ ପାଞ୍ଚଥର ଖୁନ୍ ହୋଇଛି । ଶବ ଗାଏବ କରାଯାଇଛି । ସାତଥର ସହରରେ ଲୁଟ-ତରଜ ହୋଇଛି । ଏହି କଳଙ୍କ କାଳିମାମୟ କାର୍ଯ୍ୟ-କର୍ତ୍ତାଙ୍କୁ ସମସ୍ତେ ଜାଣନ୍ତି । ଆପଣ କ'ଣ ଭାବନ୍ତି ପୁଲିସ ଏହିସବୁ ଜାଣି ଜାଣେ

ନାହିଁ ? ମୁଁ କହୁଛି ପୁଲିସ ନିଶ୍ଚିତରୂପେ ସମସ୍ତ କଥା ଜାଣେ । କିନ୍ତୁ ଅଲିଖା ପୁଲିସର ମୁହଁ ବନ୍ଦ କରି ଦେଇଛି । ସେମାନଙ୍କୁ ଖୁଆଇଛି, ପିଆଇଛି । ସାହେବ, କ'ଣ ଆଉ କହୁଛନ୍ତି ? ବର୍ତ୍ତମାନ ସରକାର ରାଜ୍ୟରେ ତ "ଖେଣ୍ଡ ମାରେ ଧକ୍କେ, ଦେବ ଗଯ୍ଯେ ଡୁଙ୍ଗରେ ଔର ପୀର ଗଯ୍ଯେ ମକ୍କେ ।" ଅର୍ଥାତ ମାତ ଅଣ୍ଡିଆ ଷଣ୍ଢମାନେ ଧକ୍କା ମାରିଲେଣି, ଦେବତାମାନେ ପର୍ବତରେ ରହିଲେଣି ଓ ପୀରମାନେ ମକ୍କା ଚାଲିଗଲେଣି; ଏପରି ଘଟଣା ଘଟୁଛି । ବର୍ଣ୍ଣ-ବ୍ୟବସ୍ଥା ଭ୍ରଷ୍ଟ ହୋଇଗଲା । ଛି, ଛି ଗାନ୍ଧୀବୁଢ଼ା ଭାରି ଖରାପ କଲା । ଏଇଥିରେ କ'ଣ ନିଆଁ ପାଉଁଶ ସ୍ୱରାଜ ମିଳିବ ? " ଇଂରେଜୀ ରାଜ୍ୟରେ ଭାରି ପ୍ରତାପ ଥିଲା ।"

ଏହିପରି ତତ୍ତ୍ୱଜ୍ଞାନ ବଖାଣି ହୃଦୟର ସମସ୍ତ ରୋଷ ପ୍ରକାଶ କରିବା ପାଇଁ ସେ ବ୍ୟାକୁଳ ହେଉଥିଲେ, କିନ୍ତୁ ଦେଖିଲେ ଯେ ରାମଲାଲ କଥା ଶୁଣିବା ପରିବର୍ତ୍ତେ ଅନ୍ୟ ବିଚାରରେ ନିମଗ୍ନ ହୋଇଛନ୍ତି । ତେଣୁ ସେ ଧୀରେ ସେଇଠୁ ଖସି ପଳାଇଲେ । ଅଳ୍ପଦୂର ଯାଇ ସେ ଅନ୍ୟଗୋଟିଏ ସଜ୍ଜନଙ୍କ ସହ ଆଳାପ କରିବାକୁ ଲାଗିଲେ । ସେମାନେ କାହାର ପ୍ରତି ବ୍ୟଙ୍ଗ କରୁଥିବା ଜଣାଗଲା । ସେମାନେ ରାମଲାଲଙ୍କ ପ୍ରତି ଏପରି ଭାବେ ହାତରେ ସଙ୍କେତ କରୁଥାନ୍ତି ଯେ ମନେ ହେଉଥାଏ ସେମାନେ ଯେପରି କହୁଛନ୍ତି—ରାମଲାଲ ଗୋଟିଏ ମଣିଷ ?

ରାମଲାଲର ତାର-ଅଫିସ ଯିବା କଥା । ଠିକ୍ ତା ସାମନାରେ ହିଁ ତାର-ଅଫିସଟି ଥାଏ । ବିଜୁଳି ଆଲୋକରେ ଝଟକୁଥିବା ତାର-ଅଫିସର ସାଇନବୋର୍ଡ଼ ଯେକୌଣସି ଅନ୍ଧ ମଧ୍ୟ ସହଜରେ ପଢ଼ି ପାରିବ, ତଥାପି ରାମଲାଲ ଚେତନା-ଶକ୍ତି ହରାଇ ବସିଥିଲେ । ତେଣୁ ତାଙ୍କୁ ନିକଟଦେଇ ଯାଉଥିବା ବ୍ୟକ୍ତିଙ୍କୁ ପଚାରିବାକୁ ହେଲା ।

ତାର-ଅଫିସରୁ ଫର୍ମ ଖଣ୍ଡେ ନେଇ ସେ ସନ୍ଦେଶର ରୂପରେଖ ତିଆରି କରିବାରେ ଲାଗିଲେ । ବର୍ତ୍ତମାନ ଗାଡ଼ି କେଉଁ ଷ୍ଟେସନରେ ଥିବ ସେ କଥାର ମଧ୍ୟ ଖୋଜ ରଖିଥିଲେ । ସେହି ସମ୍ଭାବିତ ଷ୍ଟେସନର ଷ୍ଟେସନ-ମାଷ୍ଟରଙ୍କ ନାମରେ ତାର ଲେଖିଲେ । ଯେତେଦୂର ସମ୍ଭବ ଖୁବ୍ କମ ଶବ୍ଦରେ ସନ୍ଦେଶଟି ଲେଖିଲେ । ଯେତେବେଳେ ହିସାବ କରି ଦେଖିଲେ ଯେ ମାତ୍ର ବାର ଅଣାରେ କାମ ଚଳେ, ସେତେବେଳେ ନିଜ

ବୁଦ୍ଧି ପ୍ରତି ତାଙ୍କର ଅଭିମାନ ହେଲା । ତାର ଫାର୍ମଟି ଝରକା ଉପରେ ଥୋଇ ଗୋଟିକିଆ ଟଙ୍କାଟି ଭିତରକୁ ଠେଲି ଦେଲେ ।

"ଅଧିକ ଦୁଇଟଙ୍କା"—ତାର-ମାଷ୍ଟର ମୁଣ୍ଡ ଉପରକୁ ଟେକି ଲେଖୁ ଲେଖୁ ଏହି କଥାଟି କହିଲେ ।

"କାହିଁକି, କେଉଁ, କାରଣରୁ ?" ରାମଲାଲ ଗରମ ହୋଇ କହିଲେ—"କ'ଣ ଅଚହ୍ଲା ବୋଲି········ ?"

"ଅଧିକା-ଖର୍ଚ୍ଚ"—ତାର-ମାଷ୍ଟର ଉତ୍ତର ଦେଲେ ।

"କିପରି ?"

"ଲେଟ୍-ଫିସ ଯୁକ୍ତ ରବିବାର ।

ରାମଲାଲର ମନେ ହେଲା ଯେମିତି ଗଭୀର-ନଦୀରୁ କେହି ଉଠାଇ-ଦେଲା । ତିନି ଟଙ୍କା ! ତା ଜୀବନରେ କେବେ ସେ ନିଜ ପାଇଁ ତିନିଟଙ୍କା ଖର୍ଚ୍ଚ କରିନାହିଁ । କ'ଣ ସତରେ ତିନିଟଙ୍କା ଖର୍ଚ୍ଚ କରିବାଭଳି ସଙ୍କଟ ଆସି ଉପସ୍ଥିତ ହେଲାଣି ? କ'ଣ ମୋ ସ୍ତ୍ରୀ ନିଜ ବୁଦ୍ଧିରେ ହାବା-ବଦଳି କରିବ ନାହିଁ ? ଏତେ ବର୍ଷଧରି ମୋ ସହବାସରେ ତାର କ'ଣ ଏଇ ଟିକିକ ବୁଦ୍ଧି ଉପୁଜି ନ ଥିବ ? କେ ଜାଣେ ? ମାଇପି ଲୋକ ତ । ମାଇପି ବୁଦ୍ଧିର କି ଭରସା ? କାଳେ ଭୁଲ କରି ନ ବସୁ ?

କିନ୍ତୁ ବିପଦ ପଡ଼ିଲେ ସେ କ'ଣ ଜଞ୍ଜିର ଟାଣି ପାରିବ ନାହିଁ ? ସେ ଯେଉଁଠି ବସିଥିବ ସେଇ ନିକଟରେ କ'ଣ ଜଞ୍ଜିର ନ ଥିବ ? ଜଞ୍ଜିର ଠିକ୍ ଅବସ୍ଥାରେ ଥିବ ତ ? ହେ ଭଗବାନ ! ବର୍ଷାକାଳ ଯୋଗୁଁ କାଳେ କଳଙ୍କି ଲାଗି ଜଞ୍ଜିରଟି ଅଚଳ ହୋଇ ନଯାଉ । ଏହି ରେଳକର୍ମଚାରୀମାନେ ମଧ୍ୟ କ'ଣ ବିପଦ ସୂଚକ-ଜଞ୍ଜିରଟିକୁ ଭଲ ରଖିଥାନ୍ତି ? ତା ହେଲେ ସେ କ'ଣ ଚିତ୍କାର କରିପାରିବ ନାହିଁ ? କ'ଣ ମୁନା ପାଟି କରିବ ନାହିଁ ? ସେଇ ତାକୁ ଅଲରଖା ଯଦି ନିଜ ହାତ ପାପୁଲିରେ ତା ମୁହଁ ବନ୍ଦ କରି ଦେଇଥିବ, ତା ହେଲେ·····?

ଏହିପରି ବିଚିତ୍ର-ଚିନ୍ତାସ୍ରୋତ ଚାଲୁଥାଏ, ଏତିକିବେଳେ ତାର-ମାଷ୍ଟର ଫାର୍ମ ଓ ଟଙ୍କା ୱାପସ କରି ତାର ବିଚିତ୍ର-ଶୃଙ୍ଖଳାଟିକୁ କାଟି ଦେଲେ । ସେ କହିଲେ—'ସେଠଜୀ, ଅବ-ଯାନ୍ତୁ କାଲି ସକାଳୁ ଆସନ୍ତୁ । ସୋମବାର ହୋଇ ଯାଇଥିବ ।"

ସେହିକ୍ଷଣି ରାମଲାଲ ହୃଦୟରେ ନିଜପୁତ୍ର ଭିକାରୀର ଭାବ ଜାଗି ଉଠିଲା । ଭୟଙ୍କର ଜଙ୍ଗଲର ଘନ ତିମିରରେ ବିପଦରୁ ଉଦ୍ଧାର କରିବା ପାଇଁ କାହାକୁ ଡାକି ନ ପାରିବା ଯୋଗୁଁ ଯେଉଁ ପରିସ୍ଥିତି ଉପୁଜେ ଠିକ୍ ସେହି ପରିସ୍ଥିତିରେ ପଡ଼ି ରାମଲାଲ ପତ୍ନୀ ପ୍ରତି ଅତ୍ୟାଚାରର କାଳ୍ପନିକ ସ୍ୱପ୍ନ ଦେଖିବାକୁ ଲାଗିଲେ । ଭୟରେ ଦୁଧ-ମୁହାଁ କୋମଳ ପିଲାଟିର ହୃଦ୍‌ଗତି କେଉଁକାଳୁ ବନ୍ଦ ହୋଇ ଯାଇଥିବ ।

"ହେ ମୋର ଭଗବାନ ! ଚଉଦ ଭୁବନ ନାଥ ! ଗରୁଡ଼ଗାମୀ !" ତାର ନିଶ୍ୱାସ ପ୍ରଶ୍ୱାସରେ କାନ୍ଦି ଗର୍ଜ୍ଜନାନିସୃତ ହେଲା । ସେ ପୁଣି ଝରକା ବାଟେ ତାର-ଫର୍ମଟି ଦେଇ ପାଞ୍ଚ ଟଙ୍କିଆ ନୋଟ ବଢ଼ାଇ ଦେଲା ।

"ଇମ୍ପ୍ଲାଏ ପ୍ରି-ପେଡ୍ ?" ତାର-ମାଷ୍ଟର ନିଜ ପରିଭାଷାନୁଯାୟୀ ସଂକ୍ଷିପ୍ତ ପ୍ରଶ୍ନ ପଚାରିଲେ । ପ୍ରତ୍ୟେକ ମାନବ ଆପଣା ବ୍ୟାବସାୟିକ ଭାଷାକୁ ପ୍ରଥମସ୍ଥାନ ଦେଇଥାଏ । ସେ ଚାହେଁ ଯେ ସମସ୍ତେ ତାହାର ଭାଷା ଶିଖିନେବା ନିହାତି ଦରକାର ।

"ହଁ ଆଜ୍ଞା ? ନାହିଁ......ନାହିଁ...ନା...ହଁ...ଆଜ୍ଞା । ଇମ୍ପ୍ଲାଇ ମଗାଇ ଦିଅନ୍ତୁ "...ରାମଲାଲ ଏତିକି ଅତି କଷ୍ଟରେ କହିଲା ।

ବ୍ୟାବହାରିକ କୁଶଳତା ସମ୍ବନ୍ଧ ବିଶେଷ ଚାଲୁଣିଟି ରାମଲାଲ ହୃଦୟରେ ସର୍ବଦା ବିଦ୍ୟମାନ ରହିଥାଏ । ପ୍ରତ୍ୟେକ ଭାବନାକୁ ସେହି ଚାଲୁଣିରେ ଚାଲିଲାପରେ କାର୍ଯ୍ୟରେ ପରିଣତ କରେ ।

ତାର-ମାଷ୍ଟର ଅଧୁଲିଟି ପକେଟରେ ପକାଇ ବାକିତକ ରେଜା ପଇସା ଫେରାଇ ଦେଲେ । ତାର-ମାଷ୍ଟର ଯେତେବେଳେ ତାର ପଠାଇବା ପାଇଁ ତାର-ଯନ୍ତ୍ର ନିକଟକୁ ଯାଇ ବିଭିନ୍ନ ପ୍ରକାରେ ଖଟ୍ ଖଟ୍ କରିବାକୁ ଲାଗିଲେ । ସେତେବେଳେ ରାମଲାଲର ଧୈର୍ଯ୍ୟ ରହିଲା । ତାର କାଳ୍ପନିକ କର୍ଣ୍ଣ-ଗହ୍ୱରରେ ଏହି ଖଟ୍ ଖଟ୍ ଧ୍ୱନି ପୋଲିସର ପଦ ଶବ୍ଦ ପରି ଶୁଣାଗଲା, ହାତ-କଡ଼ର ଝନ୍‌ଝନ୍ ଶବ୍ଦ ଚାରିଆଡ଼େ ପ୍ରତିଧ୍ୱନିତ ହେଲା, ବଦମାସ୍ ଅଲରଖା ହାତରେ ହାତକଡ଼ି ପିନ୍ଧାଇବା ସମୟରେ ଚାବି ପକାଇବା 'ଖଟ୍' ଧ୍ୱନି ମଧ୍ୟ ଶୁଣିପାରିଲା ।

ପ୍ରତ୍ୟୁତ୍ତର ଫର୍ମଟି ଲଫାପାରେ ଭର୍ତ୍ତିକରି ତାର ମାଷ୍ଟର ଯେତେବେଳେ ରାମଲାଲ ହାତକୁ ବଢ଼ାଇ ଦେଲେ, ନିମିଷକ ପାଇଁ ସେ ଅଦ୍ଭୁତ ଶାନ୍ତିର ଅନୁଭବ କଲା । ତାର ଖୋଲି ପଢ଼ିଲା । ସେଥିରେ କେବଳ ଏତିକମାତ୍ର ଲେଖାଥିଲା ।

—"ଗାଡ଼ି ପାଞ୍ଚ ମିନିଟ ପୂର୍ବରୁ ଷ୍ଟେସନ ଛାଡ଼ି ଦେଲାଣି ।"

ରାମଲାଲ ଆହୁରି ଅଧିକ ପଇସା ଖର୍ଚ୍ଚ କରିବା ସାହାସ ନ ରଖି ପାରିବା ଯୋଗୁଁ ଈଶ୍ବରଙ୍କ ଆଶ୍ରୟ ନେଲା । ଯଦି ସେ ଅତି ପୁରାତନ ଯୁଗର ହୁଅନ୍ତା ତେବେ ଦେବତାଙ୍କଠାରେ ମାନସିକ ରଖନ୍ତା ଓ ଯଦି ନୂତନ ଯୁଗର ହୋଇଥାନ୍ତା ତେବେ ନିଜସ୍ବ ପୌରୁଷତାର ପରୀକ୍ଷା କରନ୍ତା । କିନ୍ତୁ ସେ କୌଣସି କୂଳର ନଥିଲା, 'ନା ଏ କୂଳ ନା ସେ କୂଳ' ମଝିରେ ଝୁଲୁଥିବା ଜଣେ ପ୍ରାଣୀ ମାତ୍ର । ତେଣୁ ସେ ଯେତେବେଳେ ଘରକୁ ଯାଇ ପଲଙ୍କରେ ଶୋଇଲା ଚତୁର୍ଦ୍ଦିଗରେ ଭୟଙ୍କର ଦୃଶ୍ୟ ଆଖି ଆଗରେ ନାଚିବାକୁ ଲାଗିଲା ।

ନିଦ ହେଲା ନାହିଁ ସତ କିନ୍ତୁ ମସ୍ତିଷ୍କ ଚିନ୍ତା ଯୋଗୁଁ କ୍ଳାନ୍ତ ହୋଇ ଯାଇଥାଏ, ଜ୍ଞାନତନ୍ତୁ ଉଗ୍ର ରୂପ ଧାରଣ କରିଥାନ୍ତି । ଗୋଟି ଗୋଟି ହୋଇ ଏହିପରି ଭୟାନକ କଥା ଯାହାକି ସ୍ମୃତି କିମ୍ବା ସ୍ବପ୍ନରୁ ଉତ୍ପନ୍ନ ନ ହୋଇ ଦୁହିଁଙ୍କ ମିଶ୍ରଣରୁ ଉତ୍ପନ୍ନ ହୋଇଥିଲା, ସେହି ସମସ୍ତ ଘଟଣା ତାକୁ ଝାଳରେ ଜୁଡ଼ୁବୁଡ଼ୁ କରି ଦେଇଥାଏ ।

ମନେହେଲା ଯାହାକୁ ସେ "ମୋ ପିଲାପିଲିଙ୍କ ଟିକିଏ ଯତ୍ନ ନେଉଥିବ" କହିଥିଲା ତା ସହ ଏଥିପୂର୍ବରୁ ଥରେ ଅଧେ ସାକ୍ଷାତ ହୋଇଛି ।

କେଉଁଠି ସାକ୍ଷାତ ହୋଇଥିବ ?

ହଁ, ହଁ ମନେ ପଡ଼ିଲା । ରେଳ ଯାତ୍ରାରେ ହିଁ ସାକ୍ଷାତ ହୋଇଥିଲା । ଅକସ୍ମାତ ସେ ଆମର ଥ୍ରୀଟ ଡ଼ବାରେ ପଶି ଆସିଥିଲା । ତା ଚେହେରା ଅତି ଭୟାନକ ଦେଖା ଯାଉଥାଏ । ତଥାପି ସେ ହାତଯୋଡ଼ି ମୋତେ କହିଥିଲା—"ଭାଇ, କିଛି ସମୟ ଲୁଚି ରହିବା ପାଇଁ ମୋତେ ଟିକିଏ ସ୍ଥାନ ଦିଅନ୍ତୁ । ମୁଁ ସ୍ବୀକାର କରୁଛି ଯେ ମୋ ଅଫିମ ଗୋଲି ମୃତ୍ୟୁ ପାଖରେ ଅଛି । ପୋଲିସ ମୋ ପିଛା ଧରିଛି ।"

ଏହି ଅନୁନୟ-ବିନୟ ବିନମୟରେ ମୁଁ ଅତ୍ୟନ୍ତ ଉତ୍ୟକ୍ତ ହୋଇ କହିଥିଲି—"ବଦମାସ ! ଏଇଠି ନାହିଁ, ଚାଲି ଯା ଏଠୁ ।"

ସେ ପୁଣି ମୋ ସ୍ତ୍ରୀ ରୁକ୍ମଣୀକୁ ବିମୀତ ହୋଇ କହିଥିଲା—ହେ ମୋ ମାଆ, ମୋତେ ଲୁଚି ରହିବାକୁ ଟିକଏ ଜାଗା ଦେଇ ଦେ ।" ସ୍ତ୍ରୀ କହିଲା—"ଭଲ ବେଟଗଟି ବସିଥାଉ ।" କିନ୍ତୁ ମୁଁ ତା ଉପରେ ବିରକ୍ତ ପ୍ରକାଶ କଲି ଓ 'ପୋଲିସ୍, ପୋଲିସ୍' ଡାକ ପକାଇଲି । ପୋଲିସ୍ ଆସି ତାକୁ କୈଦ୍ କଲା । ମୋତେ କୋର୍ଟରେ ପ୍ରଶଂସା, ସାବାସୀ ମିଳିଲା । ସେ ବିଚରା ତିନିବର୍ଷ କାରାଦଣ୍ଡ ପାଇଲା । ସେହି ସମୟରେ ସେ ମୋ ଆଡ଼କୁ ଚାହିଁ ଦୃଢ଼ ପ୍ରତିଜ୍ଞା କରି କହିଥିଲା—"ରହ, କାରାମୁକ୍ତ ହେଲା ପରେ ତୋ କଥା ଦେଖିବି ।"

ଏ ସେଇ ଲୋକ । ସେ ନିଶ୍ଚୟ ମୋ ପତ୍ନୀକୁ ପଚ୍ଚର ଥିବ...... ରକ୍ତ ପିଇଥିବ......ହାୟ ! ଓହୋ......।" ରାମଲାଲ ନିଜ ଡାକରେ ନିଜେ ଉଠି ବସିଲା ।

× × × ×

ଶେଷରେ ସକାଳ ହେବା କଥା, ହେଲା ମଧ୍ୟ । ପ୍ରାୟ ୧୦ଟା ବେଳେ ରାମଲାଲ ତାର ପାଇଲେ ଯେ "ସମସ୍ତେ ସକୁଶଳ ପହଞ୍ଚି ଗଲେ ।" ତୃତୀୟ ଦିନ ପତ୍ନୀର ଧାର୍ଦ୍ଧ-ପତ୍ର ପାଇଲା । ରାମଲାଲ ଚକିତ ହେଲା । ଜୀବନରେ କେବେହେଲେ ରୁକ୍ମଣୀ ଏତେ ଶୀଘ୍ର ପହଞ୍ଚିବା ଖବର ଦେଇନାହିଁ ।

ପତ୍ରଟି ଜଣେ ଅଳ୍ପ ପଢ଼ାଲେଖା ଅଶିକ୍ଷିତ ସ୍ତ୍ରୀର ଭାଷାରେ ଲିଖିତ। ପତ୍ରାରମ୍ଭ ପ୍ରିୟ, ମୋ ପ୍ରିୟତମ, ମୋ ପ୍ରାଣପ୍ରିୟ ସ୍ୱାମୀ ଆଦି ସମ୍ବୋଧନକୁ ପରିତ୍ୟାଗ କରି ସିଧା ସଳଖ ବ୍ୟାବହାରିକ ଶୈଳୀରେ ବିଷୟବସ୍ତୁ ନେଇ ଲେଖା ହୋଇଥିଲା, ତେଣୁ ସେହି ପତ୍ରଟି ଇଞ୍ଜିନ ସୁଶୋଭିତ ପ୍ରାଚୀନ ରେଳଗାଡ଼ି ପରିବର୍ତ୍ତେ ବିଦ୍ୟୁତ୍-ଚାଳିତ ଇଞ୍ଜିନ ନ ଥିବା ଲଞ୍ଜକଟା ଗାଡ଼ି ସମ ଦେଖା ଯାଉଥାଏ । ଏଇ ରହିଲା ପତ୍ରଟି । ସେଥିରେ କେବଳ ବିରାମ ଚିହ୍ନ ମାତ୍ର ମୋର ରହିଛି—

‘‘ତୁମର ଟିକଏ ସୁଦ୍ଧା ବୁଦ୍ଧି ନାହିଁ । ମୁଁ ତମକୁ ନେହୁରା କରି କହୁଥିଲି ମୋତେ ପାଣିପାଇଁ ଗୋଟିଏ ସୁରେଇ ଆଣିଦିଅ, ପିତଳ ନ ହେଲେ ନାହିଁ ମାଟିର ଆଣିଦିଅ, କିନ୍ତୁ ତୁମେ ମୋକଥା ଶୁଣିଲ ନାହିଁ । କହିଲ ଷ୍ଟେସନରେ ପାଣି ମିଳୁଛି କ'ଣ ଲୋଟା ଥିଲେ ଚଳିବ ନାହିଁ ? ଶେଷରେ କଥା ରହିଲା ତୁମର । ବାଟରେ ପାଣି ଦରକାର ହେଲା, ଛୋଟ ପିଲାମାନେ କାନ୍ଦିବାକୁ ଲାଗିଲେ, ସହ-ଯାତ୍ରୀମାନେ ଶୁଦ୍ଧ ବୈଷ୍ଣବ ଭୋଜନ ଖୁଆଇଲେ ପିଲାଏ ଚାଣି, ପାଣି ଉଡ଼ ଛାଡ଼ନ୍ତି । ସେ ଭାଇଟି ପ୍ରତି ଷ୍ଟେସନରେ ଦୌଡ଼-ଦୌଡ଼ ପାଣି ନେଇ ଆସେ । ମୋତେ ତ କିଛି ପଚାର-ପଚରି କରି ନାହିଁ । କିନ୍ତୁ ସାଥୀ ଭାଇମାନଙ୍କୁ କହେ—'ଏହାରି ଧର୍ମ (ପତି) ମୋତେ ଯତ୍ନ ନେବାକୁ କହିଛି' । ଏପରି କହୁଥାଏ ଓ ଅତ୍ୟନ୍ତ ଆନନ୍ଦିତ ହେଉଥାଏ ।

ବର୍ତ୍ତମାନ ମୂଳରୁ ସମସ୍ତ କଥା ବୁଝେ । ଗାଡ଼ି ଖୋଲିବା ମାତ୍ରେ ଶୀଘ୍ର ସେହି ବାଳକୁ······ଘୁଣ୍ଟ ମଟୁନାହିଁ, କହିବାକୁ ଲାଜ ଲାଗୁଛି······ତା କୋଳରୁ ଠେଲିଦେଇ କହିଲା—ଟିକଏ ଘୁଞ୍ଚି ବସ । ତା ପରେ ସାଙ୍ଗ ସାଥିଙ୍କୁ କହିଲା—ଖିଲ୍ ଖିଲ୍ ହୋଇ ହସିବା ବନ୍ଦ କର ତଥା ବଡ଼ ଧୂଆଁ ଏପଟେ ମୋଟେ ଛାଡ଼ିବ ନାହିଁ, କାରଣ ଏହାର ଧର୍ମ ମୋତେ କହି ଯାଇଛି······ଏହାର ଯତ୍ନ ନେଉଥିବ ।

ତା ପରେ ସମସ୍ତେ ଖୁବ୍ ଆସ୍ତେ ଆସ୍ତେ କଥା ହେଲେ । କିଛି ସମୟ ପରେ ସେମାନଙ୍କ ମଧ୍ୟରୁ ଅନେକେ ଶୋଇ ପଡ଼ିଲେ କିନ୍ତୁ ସେ ଭାଇ କହୁଥାଏ—ମୁଁ ଶୋଇବି ନାହିଁ । ଏହାର ଧର୍ମ ମୋତେ କହି ଯାଇଛି········ଆଉ ।

ସାରା ରାତି ସେ ସେହିପରି ବସି ରହିଲା । ମୋତେ ଡର ଲାଗୁଥାଏ । ଛାତି ଥରୁଥାଏ । କେଜାଣି କାହିଁକି ଶୋଉନାହିଁ । ମୋତେ କହୁଥାଏ—'ମା, ଶୋଇପଡ଼ ।' କିନ୍ତୁ ମୁଁ ଶୁଅନ୍ତି କିପରି ? ମିଛଟାରେ ଶୋଇ ରହିଲି । ମୁନି କାନ୍ଦିଲା, ଖୁବ୍ ପାଟିକରି କାନ୍ଦିଲା । ସେ ଭାଇ ଉଠିଲେ । ମୋତେ କହିଲା, 'ମା ଖଣ୍ଡେ ଲୁଗା ଦିଅ ।' ମୁଁ ଭାବିଲି ଲୁଟିବାକୁ ଆସିଛି । ମୁଁ ହାତଯୋଡ଼ି କାନ୍ଦି କାନ୍ଦି କହିଲି—'ଭାଇ ଖାଲି ଏ ସବୁ ମୋଠାରୁ ନେଇ ଯା । ମାତ୍ର ମୋ ଦେହରେ ହାତ ଦେନା ଓ ମୋ ପିଲାଙ୍କୁ ହାତ ଲଗାନା ।' ମୁଁ ମୋ ବେକରୁ ଗହଣା କାଢ଼ିବାକୁ

ଲାଗିଲି । ସେ ଠୋ, ଠୋ ହସିବାକୁ ଲାଗିଲା । ତାପରେ ନଜେ ଗଣ୍ଡିଲ ଫିଟ୍ଟାଇ ଝୁଲରେ ବାନ୍ଧିବା କନା ଖଣ୍ଡିକ କାଢ଼ିନେଲ । ଦୌଡ଼ି ତ ତା ପାଖରେ ଥିଲ, ତେବେ ଦୁଇ ପଟ ଡାଳରେ ବାନ୍ଧି ଝୁଲି ବାନ୍ଧିଲା । ମୁନ୍ନାକୁ ସେଥିରେ ଶୁଆଇ ଦେଲା ଓ ଅଳ୍ପ ଦୂରରେ ବସି ଝୁଲାଇବାକୁ ଲାଗିଲା ଓ ପଠାଣ ଭାଷା କେତେ ପ୍ରକାର ଲୋଲି ( ପିଲାଙ୍କୁ ଶୁଆଇବା ଗୀତ ) ଗାଇଲା । ମୋତେ ଏସବୁ ବଟନ ଲାଗୁଥାଏ । ହସ ଲାଗିଲା ତଥା କାନ୍ଦ ମଧ୍ୟ । ଏ ଦାଢ଼ୀ-ନବୋଲା, ସାତ ହାତ ଉଚ୍ଚ ରାକ୍ଷସ ପରି ପ୍ରାଣୀଟିଏ କେଉଁଠୁ ଏପରି ସ୍ତ୍ରୀ-ସୁଲଭ ମଧୁର ଗଳା ପାଇଛି । ଗୀତ ଗାଇ ଗାଇ ସେ କାନ୍ଦ ପକାଇଲା ଆଖିରୁ ଅବିରଳ ଅଶ୍ରୁଧାରା ପ୍ରବାହିତ ହେଲା । ଖୁବ୍ କାନ୍ଦିଲା ପରେ ମନେ ମନେ କହୁଥାଏ— "ପିଲା-ପିଲ କେଉଁଠି ? ତୁମେ କେଉଁଠି ? ମୁଁ କେଉଁଠି ?"

ମୁନ୍ନା ମଧ୍ୟ କି ଦୁଷ୍ଟ । ପ୍ରତିଦିନ ମୁଁ ତାକୁ ମାଡ଼ପିଟି ଶୁଆଏ କିନ୍ତୁ ଏଠି ସେ ଝୁଲାଇବା ମାତ୍ରେ ଶୋଇ ପଡ଼ିଲା । ଆଗୋ, ତୁମେ ହନେ ଆଧେ ସୁଦ୍ଧା ମୋ ପିଲାଙ୍କୁ କେବେ ଝୁଲାଇଛ ? କେଉଁଦିନ ଲୋଲିର ଗୋଟିଏ ସ୍ୱର ମଧ୍ୟ ଗାଇଛ ? ଯେଉଁ ସମୟରେ ମୁଁ ବନେଇ କରି କହେ, ସେତେବେଳେ ତୁମେ ଏତିକି ମାତ୍ର କହି ଠିଆ ହୋଇପଡ଼—'ଏ କାମ ମୋର ନୁହେଁ, ମୁଁ ମରଦ ପୁଅ । ଦେଖିଲ ଏ ମଧ୍ୟ ଜଣେ ମରଦ ଥିଲା ।'

ଅଗୁ ଶୁଣ ଏ କଥା । ଏମିତି ପ୍ରାୟ ଘଣ୍ଟା ଚାଳିଶ ହୋଇଥିବ । ଗୋଟିଏ ଜଙ୍ଗଦନ ଅସିଲା । ଠିକ୍ ଆମ ଛବା ଆଗରେ ଝୁଲା-ମୁଣା ତଥା ବନ୍ଧୁଣାଦନ ଧରି ପ୍ରାୟ କୋଡ଼ିଏ ଜଣ ଖାକି ବସ୍ତ୍ରଧାରୀ ଆସି ଠିଆ ହେଲେ । ପ୍ରଥମେ ସେମାନେ ସେ ହାଇ ଅଡ଼କୁ ଚଲେ ଏବଂ ଶୀଘ୍ର ଫେରି ଆସିଲେ ପରେ ମୋ ଅଡ଼କୁ ଆସି କହିଲେ—ଭଉଣୀ ! ତୁମକୁ ଏଠି ସ୍ଥାନ ଖାଲି କରିବାକୁ ପଡ଼ିବ । ମୁଁ ପଚାରିଲ, 'କାହିଁକି ?'

ସେମାନେ କହିଲେ—'ଜାଣି ନାହିଁ ? ଲୋକସେବକ ମଣ୍ଡଳୀ ଯାଉଛନ୍ତି ।

ମୁଁ କିଛି ବୁଝିପାରିଲି ନାହିଁ । ପଚାରିଲି—'ତୁମେ କଅଣ ସରକାରୀ ଲୋକ କି ?'

ସେମାନେ ହସିଲେ । କହିଲେ, 'ହୁଁ, ହିଁ ଆଜିକାଲିକାର ଯୁବକ, ଭବିଷ୍ୟ ସରକାରର । ଚାଲ ଉଠାଅ ତୁମକୁ ପଢ଼ଶା ଢଙ୍ଗରେ ବସାଇ ଦେବୁ ।'

ମୁଁ ଅତି ଘାବରାଇ ସ୍ୱର କହିଲି—'ଭାଇ ! ମୋର ଶ୍ରେଷ୍ଠ ଶ୍ରେଷ୍ଠ ପିଲା ଶୋଇ ପଡ଼ିଲେଣି, ତା ଛଡ଼ା ସାମାନ ମଧ୍ୟ ମୋ ପାଖରେ ବେଶୀ ଅଛି ।'

ସେମାନେ କହିଲେ—'ଛି ଛି କେଡ଼େ କଥା । ତରୁଣୀ ଯେତେବେଳେ ଅନ୍ୟ ଦେଶୀମାନେ ଲୋକସେବକଙ୍କୁ ଦେଖିବା ମାତ୍ରେ ତାଙ୍କ ଚରଣରେ ସମସ୍ତ ଆଭୂଷଣ ତଥା ହୀରା ମୋତି ମାଣିକ୍ୟର ହାର ଜମା କରି ଦେଉଛନ୍ତି ସେତେବେଳେ ତୁମେ ସେମାନଙ୍କ ପାଇଁ ସ୍ଥାନ ଦେବାକୁ ନାହିଁ କରି ପାରୁଛ ? ତୁମେ ଏ କଥା ଜାଣିନାହଁ ଯେ ଲୋକ-ସେବକଙ୍କର ତୃତୀୟ ଶ୍ରେଣୀ ଡବାରେ ବସିବା ହିଁ ବ୍ରତ ! ଆରେ 'ତୃତୀୟ ଶ୍ରେଣୀ' ସମ୍ବନ୍ଧୀୟ ସେ ଗାଥାଟି କ'ଣ ମନେ ନାହିଁ ?'

ମୁଁ ତ କିଛି ବୁଝି ପାରିଲି ନାହିଁ । ମୋ ମୁହଁରୁ ବାହାରି ପଡ଼ିଲା—'ତୃତୀୟରେ ଯାଆନ୍ତୁ ତୁମ ଲୋକ-ସେବକ । ମୋ ପ୍ରାଣ ବାହାରି ଯାଉଛି ?'

ମୋ ମୁହଁରୁ ତ ଅପଶବ୍ଦ ବାହାରି ପଡ଼ିଲା । କିନ୍ତୁ ସେମାନେ କହିଲେ—'ଦେଖ୍ ଏଠାରେ କ'ଣ କରୁଛୁ ? ଅଳ୍ପରେ କହିବାକୁ ଗଲେ ସେମାନେ ମୋତେ ଅଦ୍ଭୁତ ଭଲ-ମନ୍ଦ ଶୁଣାଇଲେ । ମୋ ଜିନିଷ ନେଇ ଅନ୍ୟ ଡବାରେ ରଖିଦେବା ପାଇଁ ଗୋଟିଏ ଯୁବକ ଉପରକୁ ଚଢ଼ିଲା । ମୁଁ ଡରି ଗଲି—ଭାଇ ! ଡାକ ପକାଇ ପକାଇ ଦେଖେ ଯେ ସେ ଭାଇ ନିଜ ସିଟ ଛାଡ଼ି ଉଠି ଆସିଲେ ଓ ଉପରେ ଚଢ଼ିଥିବା ବଳିଆ ଗୋଟାଏ ଲୋକକୁ ଗଳା-ଧରି ଆଖି ଦେଖାଇ କହିଲେ—"ବେଟା ଧମକ ମୋତେ କହି ଯାଉଛୁ କି ମୁଁ ଏହାର ଯତ୍ନ ନେବି, ଜାଣିଛୁ ?"

ସେମାନେ ସମସ୍ତେ ଆଖି ତରାଟି ରହିଗଲେ ଓ ଯାହା ଗଳା ଧରିଥାଏ ସେ ଏମିତି ଛଟପଟ ହେଲା ଯେପରିକି ମଦାରୀ ହାତରେ ଉଡ଼ୁଥିବା ଗୁଡ଼ି । ଫେର ତାର ସାହାସ କାହିଁ ଯେ ମୋ ସିଟ ଆଡ଼କୁ ଆସନ୍ତା । ଯେ ମୋତେ ଉଠାଇବାକୁ କହୁଥିଲା, ଲୋକସେବକ

ଲୋକସେବକ ବନ୍ଧୁମାନଙ୍କୁ ସେଇ ବର୍ତ୍ତମାନ କହିବାକୁ ଲାଗିଲେ—"ଆଉମାନେ ଚାଲ, ଅନ୍ୟ ଡବାରେ ବସିବା, ଜାଣିଥିବୁ ଏକତାକୁ ଭାଙ୍ଗିବା ଉଚିତ ନୁହେଁ, ଆମେ ଯେଉଁଠି ପାଖେଇ ବସିଯିବା । ଦେଖ ତ ଆମର ମନ ଭଲ ଅଛନ୍ତି ।"

ପରେ କାହାଣ ଉଦ୍ଧୃତ କରି, 'ଅଲ୍ଲାହୋ ଅକବର' କହୁ କହୁ ସେମାନେ ଅନ୍ୟ ଡବାକୁ ଚାଲିଗଲେ ।

ଏକୁଟିଆ ହୋଇଯିବା ପରେ ସେ ଭାଇ ନିଜକୁ ନିଜେ କହୁଥାଏ-- "ମୋତେ କହୁଛି, ଏହାର ଯତ୍ନ ନେଉଥିବ ! ଏଁ ! ମୋତେ କହୁଛି ! ମୋତେ ! କେତେବେଳେ ନିଜ ଛାତି ଥାପୁଡ଼ାଏ ଓ କହେ 'ମୋତେ କହୁଛି, ଯତ୍ନ ନେଉଥିବ ।' ଶାବାସ୍ ।"

"ଏକାବେଳେ ପାଗଳ ହୋଇ ଯାଇଥାଏ ସେ ।"

"ସକାଳୁ ଷ୍ଟେସନରେ ପହଞ୍ଚିଲା । ସେ ବଡ଼ଚାଚୁ, ଜସ୍ମିନ୍ ତଥା ମୁନାକୁ ଜଣ ଜଣ କରି କୋଳକୁ ନେଲା ଓ ଚୁମ୍ବନ କଲା ଶେଷରେ ମୁଣ୍ଡରେ ହାତ ରଖି କହିଲା—ସାଲାମ-ବାଲେକୁମ ।"

ମୁଁ କହିଲି—"ଭାଇ ତୁମେ ମୋର ମାନ ରଖିଲ । ଯେତେବେଳେ କଲେଜର ଆସ ନିଶ୍ଚୟ ଆମ ଘରକୁ ଆସିବ । ଆମ ଘର ଅମୁକ ସାହିରେ । ପିଲାଙ୍କ ବାପଙ୍କ ନାମ 'ର' ଅକ୍ଷରରେ ଆରମ୍ଭ ହୁଏ । ମୁଁ ମୋ ଭାଇକୁ କହିଲି— ତୁମେ ଏହାଙ୍କୁ ତୁମ ଘରର ପୂରା ଠିକଣା କହିଦିଅ । ମୋ ଭାଇ କହିଲା—'ଗ୍ରନ୍ଥଲ ଚୁନୁନୁଲ ମଟେଶ୍ୱ ।' ନାମଟି ଶୁଣିବା ମାତ୍ରେ ଚମକି ପଡ଼ିଲା । କିଛି ସମୟ ପାଇଁ ତା ଆଖି ଖୋସି ହୋଇ ରହିଲା, ପରେ ଖୁବ୍ ଜୋରରେ ହସିଲା ।"

ମୋ ଭାଇ ତୁମର ପୂରା ଠିକଣାଟି ଲେଖି କାଗଜ ଖଣ୍ଡେ ଦେବାକୁ ଚାହିଁଲେ—କିନ୍ତୁ ସେ ହସି ମନା କରିଦେଲେ ଓ ଆକାଶ ଆଡ଼କୁ ଅଙ୍ଗୁଳି ଉଠାଇଲେ ।

ତୁମର
ତୃଣମଣି

ଏହିପରି ପତ୍ରିକା ମାନେ ସେ ଉପରସ୍ଥ ଡାକରେ ପଦ୍ମୀ ତଥା ଶଳାଙ୍କୁ ଖଣ୍ଡେ ଚିଠି ଲେଖି ପଠାଇଲେ—"ମୋ ଠିକଣା ଲେଖା କାଗଜଟି ତାଙ୍କୁ ଦେଇନାହଁ, ଠିକ୍ ଜଣା ଅଛି ତ ? ଯଦି ଦେଇ ନ ଥିବ ତା ହେଲେ କାଗଜଟିକୁ ଚିକି ଚିକି କରି ଚିରି ଦେବ । ଯଦି ଦେଇଛ ତାହେଲେ ଧର୍ମ-ବଣ ଚକାଇ କହୁଛି— ମୋତେ ସତ୍ୟ ଘଟଣା ଜଣାଅ, ଯେପରିକି ମୁଁ ମୋ ଘରେ ପୋଲିସ ବ୍ୟବସ୍ଥା କରି ରଖେ ।"

ଉତ୍ତରରେ ଶାଳକ ମହାଶୟ ସେହି କାଗଜ ଖଣ୍ଡିକୁ ଲଫାପାରେ ବନ୍ଦ କରି ଭଉଣୀଙ୍କ ନିକଟକୁ ପଠାଇ ଦେଲେ । ଭାଗ୍ୟ-କ୍ରମେ କାଗଜ ଖଣ୍ଡିକ ତାଙ୍କ ନୋଟ-ବୁକ୍‌ରେ ରହିଥିଲା । କାଗଜଟି ପାଇଲା ପରେ ମଧ୍ୟ ରମଲାଲ୍ ନିଶ୍ଚିନ୍ତ ହେଇ ରହିବା ଲୋକ ନୁହନ୍ତି । ସେ ସମସ୍ତ କଥା ପୋଲିସକୁ ଜଣାଇ ଦେଲେ ।

ପୋଲିସ ଅଧିକାରୀ ମଧ୍ୟ ଘଟଣାଟି ଉପରେ ବିଶେଷ ଗୁରୁତ୍ୱ ଦେଇ ରମଲାଲ ଘରେ ତାଙ୍କ ଖର୍ଚ୍ଚରେ ଗୋଟିଏ ଚୌକିଦାର ବ୍ୟବସ୍ଥା କରିଦେଲେ ।

ରୁକ୍ମଣୀ ଯେତେବେଳେ ମାତୃଆଳୟରୁ ଫେରେ ରମଲାଲ ତାଙ୍କୁ ଖୁବ୍ ଧମକାଇ କହିଲେ—"ସେ ବଦମାସକୁ ଘର ଠିକଣା ଜଣାଇବା ବୁଦ୍ଧି ତୁମର କିପରି ହେଲା ?

ରୁକ୍ମଣୀ ସଜଳ ନେତ୍ରରେ ଘର ଅଳରଖାର କଳ୍ପିତ ମୂର୍ତ୍ତିଟିକୁ ନିଜ ଅଶ୍ରୁଜଳରେ ସିକ୍ତ କରୁଥାନ୍ତି ।

  

